ଗୋଦାବରୀଶ ମହାପାତ୍ର

# ବାରଟି ଗଳ୍ପ

# ବାରଟି ଗଳ୍ପ

ଗୋଦାବରୀଶ ମହାପାତ୍ର

ପ୍ରକାଶକ -

ମହାପ୍ରସାଦ ବ୍ରଦର୍ସ

ହାଇ କୋର୍ଟ ରୋଡ଼, କଟକ-୭୫୩୦୦୨

**ବାରଟି ଗଳ୍ପ**

ପ୍ରଥମ ସଂସ୍କରଣ

ପାଞ୍ଚ ଟଙ୍କା

ମୁଖ୍ୟ ପରିବେଷକ

**ଛାତ୍ରସାଥୀ ପୁସ୍ତକାଳୟ**

ହାଇକୋର୍ଟ ରୋଡ୍ କଟକ-୭୫୩୦୦୨

ନ'ଅଙ୍କ ଦୁର୍ଭିକ୍ଷରୁ ଆରମ୍ଭ କରି ଗଡ଼ଜାତ ମିଶ୍ରଣ ପୂର୍ବପର୍ଯ୍ୟନ୍ତ ଜାତୀୟ ଚରିତ୍ର, ଜୀବନର ନାନା ସ୍ତରର ଏବଂ ଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଓଡ଼ିଶାର ସାମାଜିକ ଓ ରାଜନୀତିକ ଜୀବନର କେତେକ ଚିତ୍ର ଫୁଟାଇବାର ଉଦ୍ୟମ ଏ ଗଳ୍ପଗୁଡ଼ିକରେ କରାଯାଇଛି । ଏଥିରେ ଥିବା ଗଳ୍ପମଧ୍ୟରୁ ଅଧିକାଂଶ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ବିଭିନ୍ନ ସମୟରେ ପ୍ରକାଶ ପାଇଥିଲା । ସେହିସବୁକୁ ଏକାଠି ପ୍ରକାଶ କରିବାମୂଳରେ ବହୁ ବନ୍ଧୁଙ୍କ ଅନୁରୋଧ ହିଁ ଏ ପ୍ରକାଶନର ଭିତ୍ତିଭୂମି ।

**ଲେଖକ**

# ସୂଚିପତ୍ର


| | | |
|---|---|---|
| ୧ । | ଆମେ ଦୁହେଁ ଓ ସେ ଦୁହେଁ | ୫ |
| ୨ । | କୁଜା ବଳଆ | ୯ |
| ୩ । | ରଜାଙ୍କ କୁଟୀର-ଶିଳ୍ପ | ୧୫ |
| ୪ । | ସ୍ୱେର ଦାସିଆ | ୧୯ |
| ୫ । | ଶେଷ ଭକ୍ତ | ୨୭ |
| ୬ । | ଗୋଟିଏ ଚଷ | ୩୧ |
| ୭ । | ମଦଦୋକାନର ଇତିହାସ | ୩୭ |
| ୮ । | ତା'ପରେ ? | ୪୧ |
| ୯ । | ରେଙ୍ଗୁନ୍-ବାହୁଡ଼ା | ୪୮ |
| ୧୦ । | ବିଧବାର ନିଃଶ୍ୱାସ | ୫୪ |
| ୧୧ । | ଜାତିଚ୍ୟୁତ | ୬୩ |
| ୧୨ । | ଗଡ଼ଜାତରେ "ଦେବବସ୍ତ୍ରା" | ୬୮ |

# ଆମେ ଦୁହେଁ ଓ ସେ ଦୁହେଁ

ଆମେ ଦୁହେଁ ଦୁଇଟି ମାଆର ଦୁଇଟି ସନ୍ତାନ, ଦୁଇଟି ଜାତିର ଦୁଇଟି ଯୁବକ, ଦୁଇଟି ଗାଆଁର ଦୁଇଟି ଦେଶସେବକ ।

ଆମର ବୟସ ଏକ, ଆମର ଭାବନା ଏକ, ଆମର କାର୍ଯ୍ୟ ଏକ, ଆମେ ଦୁହେଁ ପିଲାଦିନେ ପଢ଼ିଲୁ ଏକା ସ୍କୁଲରେ, ଏକା ଶିକ୍ଷକଙ୍କ ଉପଦେଶ ଏକାଭଳି ଗ୍ରହଣ କଲୁ, ଏକାବେଳକେ ମହାତ୍ମାଙ୍କ ଆହ୍ୱାନ ଶୁଣି ଏକାଦିନକେ ସ୍କୁଲ ଛାଡ଼ିଲୁ ।

ତେଣୁ ଆମେ ଦୁହେଁ ଏକାପଥର ପଥିକ ଦୁଇଟି ଯୁବକ, ଦେଶର ଦୁଇଟି କର୍ମୀ, ଉତ୍କଳ-ଜନନୀଙ୍କର ଦୁଇଟି ଭକ୍ତ, ଦୁଇଟି ଆସନ୍ନ ନେତା, ଏପରି କି କୁହାଯାଇପାରେ—ଆମେ ଦୁହେଁ ଦୁଇଟି ଆଗାମୀ ମନ୍ତ୍ରୀ ।

ମାତ୍ର ଆମେ ଜାଣୁନା ସେ ଦୁହେଁ କିଏ । ଜୀବନର ଦୀର୍ଘପଥ ସେମାନେ ପାର ହୋଇ ଆସିଛନ୍ତି । ଦୁଇଟି ଜୀବନଧାରା ସତେ ଅବା କେଉଁ ଗିରିକନ୍ଦରରୁ ବାହାରି ସମୁଦ୍ର ସହିତ ମିଳିବାକୁ ଅଳ୍ପ ତଫାତ୍‌ରେ ସ୍ଥିର ରହିଛନ୍ତି । ହାତରେ ବାଡ଼ି ଠୁକ୍ ଠୁକ୍ କରି ଦୁହେଁ ଯେତେବେଳେ ବାଟେଘାଟେ ଲଇଁ ଲଇଁ ଚାଲିଯାଆନ୍ତି, ମନେ ହୁଏ, ସତେ ଅବା ସେମାନେ ଦୁଇଟି ଯାଆଁଳା ଭଉଣୀ । ଗାଁର ବିଭବଶାଳୀ ସରବରାକାରର ବାଡ଼ିପଟ ବିଲତଡ଼ିରୁ ସେମାନେ ଲଇଁ ଲଇଁ ଅନାବନା ଶାଗ ତୋଳୁଥିବାବେଳେ ମନେ ହୁଏ, ସତେ ବା ଦୁଇଟି ଅବହେଳିତ ପଶୁ ଘାସ ଚରୁଛନ୍ତି । ସାତଠା' ଗଇଁଠା କନାଧଡ଼ି ଗୁଡ଼େଇ ହୋଇ ଗାଁମୁଣ୍ଡରେ ଅଇଁଠା ଖଲି ଗୁଣ୍ଟୁଥିଲାବେଳେ ମନେ ହୁଏ, ଯତେ ବା ପିଲାଦିନର ଗପ ଭିତରର ସେଇ ଦୁଇଟି ଡାହାଣୀ ଭଉଣୀ ଏପର୍ଯ୍ୟନ୍ତ ଜୀଇଁରହିଛନ୍ତି । କିନ୍ତୁ ସେ ଦୁହେଁ ଆମରି ପରି ଏକପଥର ପଥିକ, ଆମର କ୍ଷୁଦ୍ର କର୍ମମୟ ଜୀବନର ପନ୍ଦରଟି ବର୍ଷ ଭିତରେ ଆମର ସୁପରିଚିତ ଦୁଇଟି ଦେଶବାସୀ ।

କିନ୍ତୁ ଆମ ବାଟ ଓ ତାଙ୍କ ବାଟ ଅଲଗା । ଯେଉଁଦିନ ଆମେ ଦେଶର ମୁକ୍ତିପାଇଁ ଭବିଷ୍ୟତର ମଧୁର କଳ୍ପନାରେ ଦାଣ୍ଡକୁ ଡେଇଁପଡ଼ିଲୁ, ସେହିଦିନୁ ହିଁ ଆମର ତାଙ୍କର ଦେଖା, ପରିଚୟ । ସେଦିନ ଗାଙ୍ଗପୁରରେ ବିରାଟ ସଭା, ହଜାର ହଜାର ଲୋକଙ୍କ ସମାଗମ । ସେଦିନ ଜୟଧ୍ୱନିରେ କାନ ତାଳିଦା ହୋଇଗଲା, ନେତାଙ୍କ ବକ୍ତୃତାରେ ପ୍ରାଣ ନାଚିଉଠିଲା, ଭାଷାର ଝଙ୍କାରରେ ମୂର୍ଖର ମଧ୍ୟ ଚେତନା ଆସିଲା । ସଭା ଭାଙ୍ଗିଲା; ଦେଖୁ ଦେଖୁ ସେହି ବିରାଟ ସମ୍ମିଳନୀ କିଛି ସମୟପରେ ଚତୁର୍ଦ୍ଦିଗରେ କୁଆଡ଼େ ମିଳେଇଗଲା । ଆମେ ଦୁଇଟି ଯୁବକ ରଙ୍ଗମଞ୍ଚର ବାହାରକୁ ଚାଲିଆସିଲୁ । ହାତରେ ବାଡ଼ି, କାନ୍ଧରେ ଝୁଲି ଧରି ଚାଲିଛୁ, ବାଟପାଖରେ ଶୁଣିଲୁ—"ନାଇଁ ଲୋ ଭଉଣୀ, ଆଜି ଏତେଲୋକ ଥିଲେ ବୋଲି ଥିଲୁ ସିନା, ମୁଠେ ଚାଉଳ ମିଳିଲା ନାହିଁ । ଏଇ ଯେ ମୁଠାକ ବାନ୍ଧିଛୁ କଣାରେ ଚେଁବେଇ ଶୋଇପଡ଼ିବା ।"

ବୁଲି ଚାହିଁଲୁ, ଦୁଇଟି ଭିକାରୁଣୀ । ଜୀର୍ଣ୍ଣ ବେଶ, ଶୀର୍ଣ୍ଣ ଶରୀର, ହାତରେ କେବଳ ଖଣ୍ଡେ ଖଣ୍ଡେ ଦଦରା ଟିଣ ଗିନା । ସତେ ଅବା ଉତ୍କଳମଣି-କର୍ଣ୍ଣିତ ଉତ୍ତର ଅଞ୍ଚଳର ଛବିଶ ସାଲ ଦୁର୍ଭିକ୍ଷର ଦୁଇଟି ଜୀବନ୍ତ ପ୍ରେତ । ଚାହିଁ ଚାହିଁ ବିଚାରିଲୁ—ଏ ଲୋକଙ୍କ ଦୁଃଖ ଆଉ ବେଶୀ ଦିନ ରହିବ ନାହିଁ । ଏହିପରି ଆଉ ଦଶ ପାଞ୍ଚଟା ବିରାଟ ସଭା ପରେ ଦୁଃଖ-ଦୁର୍ଦ୍ଦଶା ସବୁ ଲୋପ ହେବ ।

ଦେଶପାଇଁ ଭାବି ଭାବି କେତେ ଦିନରାତି ଶେଷ ହେଲା । ଆମ ମତରେ ଯାହାକୁ ଆମେ 'ଅଜ୍ଞ ଜନସାଧାରଣ' ବୋଲି ମନେକଲୁ ସେମାନଙ୍କୁ ବୁଝାଇ ବୁଝାଇ ଆମର କଥା କହିବାର ଅଭ୍ୟାସ ବଢ଼ିଲା, କେତେ ସଭାସମିତି ହେଲା । ବୁଲି ବୁଲି ବହିରେପଢ଼ିଥିବା ଦେଶଜନନୀର ଗିରି, ସମୁଦ୍ର, ନଦୀ, ପ୍ରାନ୍ତର ଦେଖି ମୁଗ୍ଧ ହେଲୁ ।

ଥରେ ବାଜପୁରରେ ସମ୍ମିଳନୀ ବସିଲା । ସେଠାକୁ ଓଡ଼ିଶାର ନେତା ନୁହନ୍ତି, ଭାରତର ନେତା ଆସିଲେ । ସେଠା ଜନସମାଗମ କଥା ଓଡ଼ିଶାର ଇତିହାସରେ ନୂଆ । ଓଡ଼ିଶାର ସ୍ୱାଧୀନତା ଲୋପପୂର୍ବରୁ ଶେଷ-ବୀର ଜୟୀ ରାଜଗୁରୁଙ୍କ ଆହ୍ୱାନରେ ବୋଧ ହୁଏ ସେତେ ଲୋକ ତାଙ୍କ ପତାକାତଳେ ଜମା ହୋଇ ନ ଥିବେ । ସେଦିନ ଆମ କର୍ମମୟ ଜୀବନରେ ଏକ ପରିବର୍ତ୍ତନ ଘଟିଲା । ଆମ ଭିତରୁ ଜଣେ ଅଭ୍ୟର୍ଥନା ସଭାର ସଭାପତି ଓ ଜଣେ ସଂପାଦକ । ସଭାରେ ଆମ ଦୁଇଜଣଙ୍କର ଆଠପଣ ପ୍ରଭାବ ।

ଆଶା, ଉତ୍ସାହ ଓ ଉତ୍ତେଜନା ଭିତରେ ସଭା ଶେଷ ହେଲା । ସଭାକାମ ସାରି ଆମେ ଦୁହେଁ ଫେରିଯାଉଥିଲୁ, ଦୁଇଜଣ କଏ କଥା ହେଉଥିବା ଶୁଣିଲି—'ଏ ଅସରାକ ବରଷାରେ ବ୍ଲକଟି ପଡ଼ିଗଲା । ଆଜି ନେଳ ପାରିବନି । ଏଣିକ ପର ପିଣ୍ଡା । ଆଜି ମୁଣ୍ଡ ଗୁଞ୍ଜିବ କେଉଁଠି ?'

ଆମେ ଦୁହେଁ ବୁଲି ଦେଖିଲୁ—"ସେହି ଦୁଇଟି ଭଉଣୀ । ମନରେ ଦୁଃଖ ଆସିଲା, କୁହାକୁହି ହେଲୁ—"ଦେଶରେ ଏପରି ଦୁସ୍ଥ-ଦରିଦ୍ର ଆଉ ବେଶୀ ଦିନ ଦେଖିବାକୁ ମିଳିବେ ନାହିଁ । ସୁଦିନ ପାଖେଇ ଆସୁଛି ।"

କାରଣ ଘଣ୍ଟାକରିଳ ବକ୍ତୃତାର ପ୍ରଭାବ ଆମ ମନରେ ଶିଥିଳ ହୋଇ ନ ଥିଲା ।

ଆମର କର୍ମମୟ ଜୀବନ ପଞ୍ଚଦଶ ବର୍ଷ ଅତିକ୍ରମ କରି ଷୋଡ଼ଶ ବର୍ଷରେ ପଦାର୍ପଣ କଲା । ଦିନେ ଆମେ ଦୁହେଁ ହଠାତ୍ ଏକ ଅଭ୍ୟର୍ଥନାସଭାର ଆହ୍ୱାନ ଦେଶବାସୀଙ୍କୁ ଶୁଣାଇଲୁ । ଜେଲଫେରନ୍ତା ଦେଶନାୟକ ଦେଶର ସବୁଆଡ଼େ ଜନସାଧାରଣଙ୍କ ଅଭ୍ୟର୍ଥନା ପାଇଥିଲେ; କିନ୍ତୁ ଆମ ଅଞ୍ଚଳକୁ ଆସି ନ ଥିଲେ । ବହୁ ଚିଠିପତ୍ର ବ୍ୟବହାରପରେ ଦିନ ଠିକ୍ ହେଲା । ସେ ଆସିବେ ଆମ ଅଞ୍ଚଳକୁ ଦିନକପାଇଁ । ଗୀତ ରଚନା କରାଗଲା, ସଭାମଣ୍ଡପ ତିଆରି ହେଲା, ଓଳିକ ଆଗରୁ ଲୋକେ ଚକ୍ରାଙ୍କଜ଼ା ଧରି ସଭା ଉଦ୍ଦେଶ୍ୟରେ ଜମା ହେଲେ । ଜଣାପଡ଼ିଲା, ଦେଶର ଭାଗ୍ୟ ବଦଳିଆସୁଛି । ବାସ୍ତବିକ ବଦଳିଲାପରି ଲାଗିଲା । ସେହି ଅଗ୍ନିମୟ ଭାଷଣ ଶୁଣି ଗାଁର ମାଧି ନାହାକ କହିଲା—"ମୁଁ ଯିବି ସତ୍ୟାଗ୍ରହ କରି ।" ଚମତ୍କାର ! ମନେକଲୁ, ଆମରି କଳ୍ପନା ସାର୍ଥକ ହେଲା । ମୂର୍ଖ, ଦରିଦ୍ର, ଲାଞ୍ଛିତ ଜନଶକ୍ତି ଆଜି ଦେଶପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ; କିନ୍ତୁ ସଭା ଶେଷ କରି ପରଦିନ ଆମେ ଯେତେବେଳେ ଫେରିଗଲୁ, ଦେଖିଲୁ ଗଛମୂଳେ ଅଇଁଠା ଖପରାରେ ପାଣି ପିଉଥିଲେ ସେହି ଦୁଇଟି ଭଉଣୀ । ଜଣେ ଜଣକୁ କହୁଥିଲା, ଆଉ ଓଳିକ ତୋରାଣି ଟୋପେ ଯେବେ ନ ମିଳିବ, ତେବେ ମୁଁ ମରିଯିବି ଲୋ ଭଉଣୀ !"

ସଙ୍ଗୀ ମୋର ଉତ୍ସାହ ହରାଇ କହିଲେ—"କେବେ ଭାଇ, ଏ ଚିତ୍ର ଆମ ଆଗରୁ ଲିଭିବ ?"

ତଥାପି ଆମ ଉତ୍ସାହରେ ଜୁଆର ସିନା, ଭଟ୍ଟା ନାହିଁ । ଏଥର ଅଭ୍ୟର୍ଥନା ନୁହେଁ, ଅଭିନନ୍ଦନ । ତିନି ଦିନ ତଳୁ ଫୁଲ ସଂଗ୍ରହରେ ଲାଗିଗଲୁ । ଲୋକଙ୍କୁ ବୁଝାଇ କହିଲୁ, "ମାଣବସା ଗୁରୁବାର ପଛକେ ବନ୍ଦ ହେଉ, ମନ୍ତ୍ରୀଙ୍କ

ଅଭିନନ୍ଦନରେ ଯେପରି ବାଧା ନ ପଡ଼େ । ଚମ୍ପାଠାରୁ କନିଅରପର୍ଯ୍ୟନ୍ତ ସକଳ ପ୍ରକାର ସକଳ ଜାତିର ଫୁଲ ଜମାହେଲା । ମାଳା ପରେ ମାଳା ଗୁନ୍ଥାହେଲା । ଅଭିନନ୍ଦନରେ ଯୋଗ ଦେବାପାଇଁ ଲୋକଙ୍କୁ ନିମନ୍ତ୍ରଣ କରାହେଲା । ଲୋକେ ଆସିଲେ, ଲୋକେ ଗଲେ । ଆମେ ଫେରିଲୁ ଶେଷରେ ।

ସେଦିନ ଖୋରଧା ସହରର କଣ୍ଠଦେଶରେ, ଯେଉଁଠି କି ଓଡ଼ିଶାର ଗୌରବର ଶେଷଦିବସ ଶେଷ ହୋଇଥିଲା, ସେହି ଭଙ୍ଗା ଗଡ଼ ପାଚେରିତଳେ ସେହି ଦୁଇଟି ଭିକାରୁଣୀଙ୍କ ଭିତରୁ ଜଣେ କେବଳ ବସି ମନକୁ ମନ କହୁଥିଲା— "ଗଲୁ ତ ଗଲୁ, ମତେ କିଆଁ ସାଥିରେ ନେଲୁ ନାହିଁ ? ମୁଁ ଆଉ କେତେ ଦିନ ଏଇ ବାଟରେ ଚାଲିବି ?"

ଏହା କହି ପାଗଳୀପରି ସେ ହସୁଥିଲା, ହସି ହସି କାନ୍ଦି ପକାଉଥିଲା, କାନ୍ଦି କାନ୍ଦି କାନିତଳେ ଗୋଟିଏ ନରମୁଣ୍ଡକୁ ଚାହୁଁଥିଲା । ସେ ଦୁଇଟି ସାଥୀରୁ ଗୋଟିଏ ଏ ସଂସାରର ସୀମା ପାର ହୋଇ ଚାଲିଯାଇଥିଲା । ସେ ଆଉ ତା' ସାଥୀ କଥା ଶୁଣୁ ନ ଥିଲା । କିନ୍ତୁ ମୋ ସାଥୀ ମୋ ହାତକୁ ଧରିପକାଇ କହିଲା— "କାହାପାଇଁ ଏତେ ସଭା, କାହାପାଇଁ ଏତେ ଫୁଲମାଳ ? ଭାଇ, ଏ ଦେଶ କି ସତେ ବଦଳିବ, ଏ ଦୁର୍ଦ୍ଦଶା କି ଘୁଞ୍ଚିବ ?"

ମୁଁ ଆଖିବୁଜି ଠିଆହେଲି । ଦେଖାଗଲା— ଘନଘୋର ଅନ୍ଧାର ରାତିରେ ସେହି ଦୁଇଟି ଭଉଣୀପରି ଲକ୍ଷ ଲକ୍ଷ ପ୍ରପୀଡ଼ିତ, ନିରନ୍ନ, ନିଃସହାୟ ମୃତ୍ୟୁପଥରେ ଚାଲିଛନ୍ତି; ଆଉ ଆମେ ଚାଲିଛୁ ଫୁଲମାଳ, ଅଭିନନ୍ଦନ, ଅଭ୍ୟର୍ଥନା ପଛରେ !

ଦେଶସେବାର ବାଟ କି ସତେ ଆମେ ଭୁଲିଛୁ ?

• • •

# କୁଜା ବଳଆ

କଦବନ୍ତୀତ "ଇନ୍ଦ୍ରମଳ-କାନ୍ତ ଶିଖଣ୍ଡ ଶୈଳେଶ"ର ଉତ୍ତରପଟେ କୁଜା ବଳଆର ଗାଁ । ଗାଁଟି ନାଁ ରତନପୁର ।

କୁଜା ବଳଆ ଆକାରରେ ଏତେ କୁଜା ଯେ ତାକୁ କୁଜା ନ କହି ଅତି କୁଜା କହିଲେ ମଧ୍ୟ କିଛି ଅସୁନ୍ଦର ହେବ ନାହିଁ । ଯେତେବେଳେ ସେ ପାଦଟିଏ ଭୂଇଁରେ ଲଗାଇ ଅନ୍ୟ ପାଦଟି ଉଠାଏ, ଦେହସାରଟା ଏକ ପାଖକୁ ଢଳିପଡ଼େ । ବୁକୁର ଏକ ପାଖ ପଞ୍ଜରାହାଡ଼ ଅଭାବରେ ସବୁବେଳେ ଲତପତ ହେଉଥାଏ । ତହିଁରେ ପୁଣି ତା'ର ବାଁ ଗୋଡ଼ଟା ଅତିଶକ୍ତ ଲମ୍ବ । ମାତ୍ର ସାଧାରଣ ମନୁଷ୍ୟ ଯେଉଁ ବାଟକୁ ଦଶ ପାହୁଣ୍ଡରେ ଯିବ ବଳଆ ତାହା ପାଞ୍ଚ ପାହୁଣ୍ଡରେ ଡେଇଁମାରେ—ଏଇ ହେଉଛି ତା ପକ୍ଷରେ ବଡ଼ ଆଶ୍ଚର୍ଯ୍ୟ କଥା । ଖାଲି ଏତିକି ତା'ର ଗୁଣ ନାହିଁ; ସେ କଥା କହିଲାବେଳେ ଓଠର ଏକ ପାଖ ଅତି ମାତ୍ରାରେ ପ୍ରସାରି ହୋଇ ଅନ୍ୟ ପାଖଟି ମୁଦ ହୋଇଯାଏ । ହସିଲାବେଳେ ମଧ୍ୟ ସେ ଦେଖେଇ କରି ହସେ । କେତେ ନୂଆ ବାଟୋଇ କମ୍ବା ହାକମହୁକୁମା କେତେ-ବେଳେ ଯେବେ ରତନପୁର ଗାଁ ଭିତରକୁ ଯାଆନ୍ତି, ଗାଁର ସକଳ ଦୃଶ୍ୟ ଭିତରେ କୁଜା ବଳଆକୁ ଦେଖିବାର ସୁବିଧା ପାଆନ୍ତି । କାରଣ କୁଜା ବଳଆ ଅନେକ ସମୟରେ ଭ୍ରମରବର, ହରି-ଅର୍ଜୁନ ପାଲା-ପୋଥି ଧରି ରସ ଆସ୍ୱାଦନ କରୁଥାଏ । ତା'ର କଣ୍ଠସ୍ୱର ଲୋକଙ୍କର କର୍ଣ୍ଣ-କଟୁ ହେଲେ ମଧ୍ୟ ବୋଲିବା ଭଙ୍ଗୀଟା ଅନେକଙ୍କର କର୍ଣ୍ଣପ୍ରିୟ ହୋଇଥାଏ ।

କୁଜା ବଳଆର ଦୁଆରେ ବସିଲେ ଶୈଳେଶ ପାହାଡ଼ଟି ପରିଷ୍କାର ଦିଶେ । ଶୈଳେଶ ଦେହରେ ଖାଲ-ଢିପ, ଉଚ୍ଚା-ନୀଚ୍ଚ ଦେଖି ସେ କହେ—"ଏଡ଼େ ବଡ଼ ପର୍ବତ, ଏମନ୍ତ ସେମୁଣ୍ଡକୁ ଆଖି ପାଉ ନାହିଁ । ଏ' ତ ପୁଣି କୁଜା ହୋଇ ଠାଏ ପଡ଼ି ଠାଏ ଉଠି ଠିଆହୋଇଛି । ଅଉ, ଏ ବଳଆଟିକି ଲୋକେ ଦେଖି କାହିଁକି ବା କୁଜା ବଳଆ ବୋଲି ଥଟ୍ଟା କରୁଛନ୍ତି ! ଏଣିକି କଏ ଯେବେ ମୋତେ

କୁଜା ବଳିଆ ବୋଲି ଡାକିବ ମୁଁ ଏ ପାହାଡ଼କୁ କୁଜା ଗ୍ଭଲେଣ୍ଟ ବୋଲି କହିବ । ମତେ କିଏ କଣ କରିବ କରୁ ।"

କୁଜା ବଳିଆ ଏକଥା ଖାଲି ଯେ ଥଟ୍ଟା-ପରିହାସବେଳରେ କହେ, ତା' ନୁହେଁ । ରାଗରେ, ଦୁଃଖରେ ମଧ୍ୟ ସେ ବେଳେବେଳେ ଏକଥା କହୁଥାଏ । କୁଜା ବୋଲି କିଏ ତାକୁ ଚଳେଇଲେ ସେ ରାଗେ, ଆଉ କୁଜା କହି କିଏ ତାକୁ ଅନୁଗ୍ରହ ଦେଖାଇଲେ ସେ ସଙ୍ଗେସଙ୍ଗେ ସେହି ଅନୁଗ୍ରହକୁ ପାଦରେ ଠେଲିଦିଏ । କହେ—"ଛି, ମୁଁ କି ଏପରି ଅନୁଗ୍ରହର ପାତ୍ର !"

ଏହି ଅବହେଳିତ, ଅସୁନ୍ଦର କୁଜା ବଳିଆ ବାସ୍ତବିକ୍ ଅନୁଗ୍ରହର ପାତ୍ର ନୁହେଁ । ସେ ହସେ, ସେ ଖେଳେ, ସେ ଗୀତ ଗାଏ, ସେ ଧାଏଁ ; ତଥାପି ତା'ର କୁଜା ଅପବାଦଟି ଥାଏ । ଭଲଭଲ କାମ ପଡ଼ିଲେ, ବଡ଼ ବଡ଼ କଥା ପଡ଼ିଲେ, ଲୋକେ ତାକୁ କାହିଁକି ବାଦ୍ ଦେଇଥାନ୍ତି, ସେ ଜାଣେ ନାହିଁ । ବେଳେବେଳେ ସେକଥା ମଧ୍ୟ ସେ ମନେ ଭାବେ । ଭାବି ଭାବି କୌଣସି ତଥ୍ୟ ପାଏ ନାହିଁ । ନିଜ ଅପମାନର, ନିଜ ଲାଞ୍ଛନାର କୌଣସି କାରଣ ନ ପାଇ ଶେଷରେ ସେ ସମସ୍ତଙ୍କ ପାଖେ ଘୋଷଣା କରେ—"ମଣିଷଗୁଡ଼ାକ ବଡ଼ ଖରାପ ।"

ଏଡ଼େ ବଡ଼ ନିଷ୍ଠୁର କଥାଟା ଲୋକଙ୍କ କାନକୁ ଖରାପ ଲାଗେ; ମାତ୍ର ତା' କଥାର କିଏ ମୂଲ୍ୟ ଦିଅନ୍ତି ନାହିଁ ।

ଠିକ୍ ଏହିପରିଭାବରେ ପଚିଶି ବର୍ଷ କଟିଗଲା । ଏହି ପଚିଶି ବର୍ଷ ଭିତରେ ବଳିଆ ମନରେ ବଡ଼ ଦୁଃଖ ରହିଗଲା ଯେ ତାକୁ କିଏ ପ୍ରକୃତରେ ଚିହ୍ନିପାରୁ ନାହାନ୍ତି । ସେ ନିଜ ବୁଦ୍ଧିରେ ହଳ କରେ, ନିଜ ବଳରେ ଘର ଛପର କରେ, ନିଜ ଇଚ୍ଛାରେ କଥା କହିବସେ, ନିଜ ଉଦ୍ୟମରେ ପେଟ ପୋଷେ । ମୋଟାମୋଟି କହିବା'କୁ ଗଲେ, ବଳିଆ ନିଜପାଇଁ ନିଜେ କରେ; ନିଜର 'କୁଜା' ଅପବାଦକୁ ସାର୍ଥକ କରିବାପାଇଁ ସେ କୌଣସି କଥାରେ କେବେ ହେଲେ କାହାକୁ ସୁବିଧା ଦିଏ ନାହିଁ ।

ବଳିଆ ପ୍ରାଣରେ ଏସବୁ କଥା ଦୀର୍ଘ ପଚିଶ ବର୍ଷକାଳ ଗୋପନରେ ରହିଲା ପରେ ଦିନେ ତା' ଜୀବନ-ଇତିହାସରେ ଏକ ନୂଆ ଅଧ୍ୟାୟ ଫିଟିଲା । କୁଜା ବଳିଆ ଯେ ପ୍ରକୃତରେ ମଣିଷ ଏହି ପଚିଶ ବର୍ଷପରେ ତାହା ଜଗତକୁ ଜଣାପଡ଼ିଲା । ତା' ଜୀବନର ବିରାଟ ଗୋପନ ଇତିହାସ ଭିତରୁ ସେହି କ୍ଷୁଦ୍ର ଇତିହାସ-ପୃଷ୍ଠାକ ଆଜି ଏଠାରେ କୁହାଯାଉଛି ।

ବ୍ୟକ୍ତିଗତ ଜୀବନର କ୍ଷୁଦ୍ର କ୍ଷୁଦ୍ର ମୁହୂର୍ତ୍ତର ଇତିହାସ ଜାତି ବା ଦେଶର ବିରାଟ ଇତିହାସ ଆଗରେ ଅତି ତୁଚ୍ଛ, ଅତି ନଗଣ୍ୟ ଜଣାଗଲେ ସୁଦ୍ଧା ସେହି ବିରାଟ ସିନ୍ଧୁର ଏକ ଏକ ବିନ୍ଦୁ, କିମ୍ବା ଏହି ବିନ୍ଦୁ ବିନ୍ଦୁ ମିଶି ସେହି ବିରାଟତ୍ୱର ବିକାଶ । ତେଣୁ କୁଜା ବଳଆର ଏହି କଥାଟାକୁ କୌଣସିମତେ ଆଖିଆଗରୁ ଆଡ଼େଇ ଦେବା କଥା ନୁହେଁ ।

କୁଜା ବଳଆର ଏ' ଇତିହାସ ଠିକ୍ ସିନ୍ଧୁ-ଗର୍ଭର ଏକ କ୍ଷୁଦ୍ର ବିନ୍ଦୁପରି—ଦିନେ ଏକ ଅଜଣା ଅଲକ୍ଷିତ ସଂଧ୍ୟା ଭ୍ରଲେଶ୍ୱର ଶ୍ୟାମଳ ଗହ୍ୱରଭିତରୁ ବାହାରି ଧରଣୀର ବୁକଆଡେ ବ୍ୟାପିଯାଉଥିଲା । ସେ ସଂଧ୍ୟାର ମହତ୍ତ୍ୱ ସମସ୍ତେ ଜାଣିବା ସହଜ ନୁହେଁ; ତାହା କେବଳ କୁଜାବଳଆ ଜାଣେ । ସେ ଅନେକ ସଂଧ୍ୟା ଦେଖିଛି । 'କର-ମୁଣ୍ଡାକୃତି ଗିରି ଖଣ୍ଡାହଣା' ଉପରେ ଯେତେବେଳେ ସଂଧ୍ୟାର ବିରାଟ ଉତ୍ସବ ଆରମ୍ଭ ହୁଏ ସେ ଜାଣିଁ କେଉଁ ଦୂର ମଫସଲର ବୁକଉପରେ ଛପର କରିବାକୁ ବସି କହେ—"ଦିଅଁ ବୁଡ଼ିଗଲେଣି ।" ଭାଦ୍ରବର ନୀଳ ଆକାଶକୁ ମୁଖରିତ କରି ଯେତେବେଳେ ଭ୍ରଲେଶ୍ୱ ଗହ୍ୱରଭିତରୁ କୁମ୍ଭାଟୁଆ ହୁଙ୍କାର ଉଠେ, କୁଜାବଳଆ ବାଛୁଥିବା ବିଲଭିତରୁ ମୁଣ୍ଡ ଟେକି ସଂଧ୍ୟାର ଆଗମନକୁ ବୁଝିଁପାରେ । ଏହିପରି କେତେ କ'ଣ ସେ ଦେଖିଛି; ମାତ୍ର ଯେଉଁଦିନର କଥା ଏଠାରେ କୁହାଯାଉଛି ସେଦିନର ସଂଧ୍ୟାକୁ ସେ ଜୀବନରେ ଭୁଲିପାରିବ ନାହିଁ ।

ଦୁର୍ଭିକ୍ଷ ସମୟ ! ଏ ଗାଁରୁ ଲୋକେ ଯାଇ ସେ ଗାଁରୁ ଫେରିଆସି ଘରେ ବାପ ମା' ଭାଇଙ୍କି ଜୀବନରେ ଦେଖିବା ଆଶା ରଖୁ ନ ଥିଲେ । ତୋରାଣିମୁଠିଏ-ପାଇଁ ଲୋକେ ନରହତ୍ୟା କରିବାକୁ ପଛୁଉ ନ ଥିଲେ । ଜୀବନ୍ତ ନର-କଙ୍କାଳର ପରିଚୟ କେବଳ ସେହି ସମୟରେ ହିଁ ମିଳୁଥିଲା ।

ସେହି କଙ୍କାଳମୟ ଯୁଗର ଏକ ସଂଧ୍ୟାବେଳେ କୁଜା ବଳଆ ପାଇଟି ସାରି ଘରକୁ ଫେରୁଛି । ଅଣ୍ଟାରେ କେବଳ ଖଣ୍ଡିଏ ଲୁଗା—ବାକି ଦେହଟାସାକ ଫୁଙ୍ଗୁଳା । ଅଣ୍ଟାରେ ତା'ର ଅଣାଏ ପଇସା ।

ଏହିପରି ସମୟରେ ସାନ୍ଧ୍ୟ ଗଗନକୁ ମୁଖରିତ କରି ଲୁଆଡ଼ୁ ପ୍ରଳୟ ଝଡ଼ ମାଡ଼ିଆସିଲା । ପାଣି, ପବନ, ବିଜୁଳି, ବଜ୍ର ! ଜଣାପଡୁଥିଲା, ଯେପରି କି ଏହି ଧରଣୀବାସୀ ମାନବର ଦୁଃଖ ସହି ନ ପାରି କେଉଁ ଦେବତା ସଂସାର ଧ୍ୱଂସ କରିଦେବାକୁ ବସିଛି ।

ଗମ୍ଭୀରମନ୍ଦିରେ ଗୋଟିଏ ଗଛମୂଳେ କ୍ଷଣକପାଇଁ ଆଶ୍ରୟ ନେବାକୁ ଯାଇ କୁଜା ବଳିଆ ଦେଖିଲା, ସେହି ଆସନ୍ନ ଅନ୍ଧାର ଭିତରେ ଜଣେ କିଏ ଛାତିକୁ ମୁହଁ ପୋତିଲାପରି ବସିଛି । ସେ କିଛି ଦୂରରେ ତା' କୁଜା ଅଙ୍ଗକୁ ସଙ୍କୋଚି ଠିଆ ହୋଇ ମୁହୂର୍ତ୍ତେ ସେ ମୂର୍ତ୍ତିଆଡ଼କୁ ଚାହିଁଲା । ତା'ପରେ ପାଖରେ ପହଞ୍ଚି ବଡ଼ ଶଂକିତ ଚିତ୍ତରେ ପଚାରିଲା—"କିଏ ?"

ସେ ମୂର୍ତ୍ତିଟି କେବଳ ମୁହଁ ଟେକିଲା ।

ଭୂତ କି ପ୍ରେତ କି ଆଉ କ'ଣ କୁଜା ବଳିଆର ସନ୍ଦେହ ହେଲା । କିଛି ପ୍ରତ୍ୟୁତ୍ତର ନ ପାଇ ପୁଣି ପଚାରିଲା—"ଘର ?"

କିଛି ଉତ୍ତର ମିଳିଲା ନାହିଁ । ସାହସରେ ଯାଇ ତା' ପାଖେ ଠିଆହେଲା । ଚିହ୍ନିଲା, ସେ ଏ ସଂସାରର ମାନସୀ—ଗୋଟିଏ କଙ୍କାଳସାର ।

ସେହି ମୁହୂର୍ତ୍ତରେ ଘନଘୋର ବର୍ଷା ମାଡ଼ିଆସିଲା । ଉପରେ ପକ୍ଷଗୁଡ଼ାକ ସତେ ଅବା ସାଇଁସାଇଁ ଗର୍ଜିଉଠିଲେ । ବଜ୍ର ପଡ଼ିଲା, ବିଜୁଳି ମାରିଲା । ବଳିଆ ଆପଣା ଅଜାଣତରେ ସେଇଠି ବସିପଡ଼ିଲା । ଆଣ୍ଠୁକୁ ଓଠ ଲାଗିଗଲା । ତା'ର ପାଖକେ ଅନ୍ଧକାର, ଆଉ ଏକ ପାଖରେ ସେହି ଅନ୍ଧାର ଭିତରେ ସେହି ଅପରିଚିତା ମୂକ କଙ୍କାଳସାର ନାରୀ ।

କୁଜା ବଳିଆର ହୃଦୟରେ ଭାବନା ବଢ଼ିଲା—"ଏତେବେଳେ ଏ କିଏ ସେ ?"

କିନ୍ତୁ ସେହି ନାରୀ ହୃଦୟରେ ଭାବନା ଚେତନା ସବୁ ଶିଥିଳ ହୋଇ ଆସୁଥିଲା । ବ୍ୟଞ୍ଜନ ହେଲା ଖାଇ ନାହିଁ । ମିଳିଥିଲା ଯାହା କିଛି ଛତ୍ର-ଚାଉଳ, ଗୁଣ୍ଡଦନ ତଳେ ସେତକ ଅସିଝାରେ ଢାଳିଦେଇ ଦେଇଥିଲା ।

ବର୍ଷା ପଛେ ପଛେ ଝଡ଼ର ଭୀଷଣତା ବଢ଼ିଲା । ପୃଥିବୀ ଭିତରୁ ସାଇଁସାଇଁ ଶବ୍ଦ ଶୁଭିଲା । ସାଥୀହୀନ ବନପଥରେ ଯାତ୍ରୀ ଜଡ଼ଭାବରେ ଥିଲାପରି ସେଇ ନାରୀ ଆଉ କୁଜା ବଳିଆ ଅନେକ ସମୟ ବସିଲାପରେ ସେହି କଙ୍କାଳସାର ନାରୀ କୁଜା ବଳିଆ ଉପରକୁ ଆଶ୍ରୟପାଇଁ ଆଉଜି ପଡ଼ିଲା । ତା'ର ଘନ ଘନ ତପ୍ତ-ଶ୍ୱାସରେ କୁଜା ବଳିଆର ହୃଦୟ ତରଳିଗଲା । ତା'ର ଅଣ୍ଟାରେ ଥିବା ଅଣାଏ ପଇସାରୁ ଦୁଇଟି ସେ ନାରୀର କାନରେ ବାନ୍ଧି ଦେଉଛି, ଶୁଭିଲା—"ଏ କଣ ?"

ସେତେବେଳେ କୁଜା ବଳଆ ମନରେ ଭାବନା ଖେଳୁଥିଲା—ଗାଁକୁ ଯିବ । ଗଲାବେଳେ ଦୁଇଟା ଗହ୍ୱର ପାରହେବ । ଗହ୍ୱର ମଝିରେ ଦୁଇଟା ବଡ଼ ବଡ଼ ବରଗଛ । ସେଠାରେ ସଂସାରପାକର ଅନ୍ଧାର ଜମାଟ ବାନ୍ଧିଲାପରି ଥିବ । କୌଣସିମତେ ଗୋଡ଼ ଘୋଷାରି ସେଠା ପାରହେଲେ ପଡ଼ିବ ପ୍ଲେଟ 'ଡାଙ୍ଗୁଆ ପଲ୍ଲୀ' ନାଳ । ଚିହ୍ନା ବୁଢ଼ ତାକୁ ପାର ହୋଇ ଗାଁ ଦେଖିବ । ଦୁଆର ମୁହଁରେ ଘରଣୀ ବୁଢ଼ୀ ବସିଥିବ । ସେ ଯାଇ ସବୁଦିନ ପରି ଅଣ୍ଟାରୁ ଅଣାଟିଏ ପରିବର୍ତ୍ତରେ ଦୁଇଟି ପଇସା ଦେବ । କହିବ—କହିବ ଆଜି ଦୁଇଟି ପଇସା··· ।

ଏତିକିବେଳେ "ଏ କଣ" ଶବ୍ଦ ଶୁଣି ବଳଆ କହିଲା—"ପଇସା ଦିଅଟା । କାଲି ଫିଟାଇବି । ଚାଲ ଆଜି ମୋ ସାଙ୍ଗରେ ମୋ ଗାଁକୁ ।"

ବଳଆ ତାର ହାତ ଧରି ଠିଆ କରିଦେଲା । ସେ କିଛି ହେଲେ କଥା କହିଲା ନାହିଁ । କଙ୍କାଳସାର ଗୋଟିଏ ହାତକୁ ଆପଣା କାନ୍ଧରେ ଭାର ଦିଆଇ ବଳଆ ରତନପୁର ଗାଁରେ ପହଞ୍ଚିଲାବେଳକୁ ନିଶାଗର୍ଜୁଛି । ତା'ର ଦୁଆର କଳାସରିଛି । ପିଣ୍ଡାରେ ନାରୀକି ବସାଇ ଦେଇ ଦୁଆରେ ଡାକଦେଲା ।

ସେ ରାତି କୁଜା ବଳଆର ଆଉ କିଛି ଖିଆପିଆ ହେଲା ନାହିଁ । ସେଇ ସ୍ତ୍ରୀ ଲୋକଟି ମୁହଁରେ ତୋରାଣୀ ଟୋପେ ଦେଇ ସେ ଯେତେବେଳେ ଯାଇ ତା'ର ଏକମାତ୍ର ଘର ବଖରାଟି ଭିତରେ ଶୋଇଲା, ସଂସାରଟା ତାକୁ ଭିନ୍ନ ପ୍ରକାର ଦେଖାଗଲା । ନିଜେ ଗରିବ ହୋଇ ସେ ଗରିବ ପ୍ରାଣର ବ୍ୟଥା ବୁଝି ନ ଥିଲା । ନିଜେ ଅଭାବରେ ପଡ଼ି ଅଭାବର ତୀବ୍ରତା ସେ ଅନୁଭବ କରି ନ ଥିଲା । ସବୁଠାରୁ ଧନ-ଦରିଦ୍ର ପ୍ରାଣରେ ଯେ ଧନ-ଦରିଦ୍ରପାଇଁ ଦୟା ମମତା କି ଗୋପନତମ ଅବସ୍ଥାରେ ରହିଛି ସେତିକିବେଳେ ସେ ବୁଝିଲା । ବାହାରର ବର୍ଷା ଅସରାପରି ତା'ର ଲୁହ ଝରଝର ଝରିପଡ଼ିଲା ।

ଯେତେବେଳେ ନିଦ ହେଲା ବଳଆ କେବଳ ସ୍ୱପ୍ନ ଦେଖିଲା । ସେ ଦେଖିଲା, ସେହି କଙ୍କାଳସାର ନାରୀଟି କାତରଭାବରେ ତା' ଉପରେ ମୁଣ୍ଡ ରଖି କହୁଛି—"ଏ କଣ ?"

ସକାଳେ ଦାଣ୍ଡଆଡ଼େ ଘୋର ଗହଳ ଶୁଭିଲା । କୁଜା ବଳଆ ସ୍ୱପ୍ନରୁ ଚମକି ଉଠିଲାପରି କହିଲା—"ଏ କଣ ?"

ପଛେ ପଛେ ଗୃହିଣୀ ଚମକିପଡ଼ି ପାଟିକଲା—"ଏ କଣ ?"

ବଳଆ ବାହାରକୁ ଆସି ଦେଖିଲା ଗାଁର ସାହୁ, ଗଉଡ଼, ପରିଡ଼ା, ପଧାନ, ପଲେଇ ସମସ୍ତେ ତା'ର ପିଣ୍ଡାକୁ ଲାଗି ଠିଆ ହୋଇ ସେହି ଅର୍ଦ୍ଧନଗ୍ନା କଙ୍କାଳସାର ଭିକାରୁଣୀଟିକୁ ଚାହିଁ କୁହାକୁହି ହେଉଛନ୍ତି—"ଏ କଣ କଥା ?"

କୁଜା ବଳଆ କାହା କଥାକୁ ଅପେକ୍ଷା ନ ରଖି କଙ୍କାଳସାର ମୁଣ୍ଡକୁ ଧରି ହଲାଇ ଦେଲା । କହିଲା—"ଉଠ ଉଠ ।"

ମୁଣ୍ଡରୁ ଗୋଡ଼ଯାଏ ଗୋଟାକଯାକ ଦେହ ଏପାଖ ସେପାଖ ହୋଇଗଲା ।

ସମସ୍ତେ ମୁହଁକୁ ମୁହଁ ଚାହାଁଚାହିଁ ହେଲେ । କୁଜା ବଳଆ ସ୍ୱପ୍ନାବିଷ୍ଟ ଭାବରେ କହିପକାଇଲା—"ଏ କଣ ମରିଗଲା !"

ସମସ୍ତେ ଦେଖିଲେ—ଏକଥା କହିଲାବେଳକୁ କୁଜା ବଳଆର ଦୁଇ ଆଖିରୁ ଦୁଇଧାର ଲୁହ ବୋହିପଡ଼ୁଛି ।

କିଏ କହିଲା ବାୟା ହୋଇଗଲା, କିଏ କହିଲା ଜାଣିଶୁଣି ଜାତି ହରେଇ ପାଞ୍ଚ ଟଙ୍କାରେ ପଡ଼ିଲା । ମାତ୍ର ଅଜାତିଆ ବାୟା କୁଜା ବଳଆ କାହା କଥାକୁ କାନେଇଲା ନାହିଁ । ସେ ଯେତେବେଳେ ସେହି କଙ୍କାଳସାର ଅପରିଚିତା ନାରୀର ମଡ଼ାକୁ କାନ୍ଧେଇ ହଳେଶ୍ୱରଆଡ଼କୁ ଚାଲିଲା, ଗାଁର ସମସ୍ତେ ଅଜାତିଆର ଏ ଅକୀର୍ତ୍ତିରେ ଅବାକ୍ ହୋଇ ଚାହିଁରହିଲେ । ଦୂରରୁ ଦେଖିଲେ ଜଣାପଡ଼ୁଥିଲା ସତେ ଅବା ଦକ୍ଷଯଜ୍ଞରେ ପାଗଳ ଶିବ ମଡ଼ାକାନ୍ଧେଇ କାହାକୁ ଅଭିଶାପ ଦେବାପାଇଁ ଚାଲିଛି ।

ସେହି ଦିନୁ କୁଜା ବଳଆ ଲୋକମୁଖରେ ଅତି କୁଜା, ଅତି ଅସୁନ୍ଦର, ଅଜାତିଆ, ବାୟା, ଅଧାର୍ମିକ, ଅବୋଲକରା—ଯେତେ ଯା ହୋଇପାରେ—ସବୁଥିରେ ପରିଚିତ ହେଲା । ମାତ୍ର ତା'ର ହୃଦୟ ଭିତରଟା ସେହି ଦିନୁ ସ୍ୱଚ୍ଛ-ସୁନ୍ଦର-ସରଳ-ଉଦାର ଭାବରେ ନାଚଉଠିଲା । ସେହି ଦିନୁ ସେ ସୁଆଙ୍ଗ ଛାଡ଼ି ଭାଗବତ ବୋଲିଲା—

ସକଳ ଘଟେ ନାରାୟଣ
ଅଛନ୍ତି ପରମ କାରଣ ।

● ● ●

# ରାଜାଙ୍କ କୁଟୀର-ଚିତ୍ର

ଗେଷ୍ଟ-ହାଉସ୍‌ର ବାରଣ୍ଡାରେ ବସି ଯେଉଁ ଲୋକଟି ଆମକୁ ପଙ୍ଖା ଟାଣୁଥିଲା, ତାକୁ ଦେଖିଲେ ମଣିଷ କୁହାଯାଇପାରେ, ପ୍ରେତ ମଧ୍ୟ କୁହାଯାଇ-ପାରେ । ତା'ଠାରେ ମଣିଷର ଗଠନ ଥିଲା ନିଶ୍ଚୟ; ମାତ୍ର ମଣିଷ ଶରୀରର ଲାଳିତ୍ୟ ବା ସୌଷ୍ଠବ କିଛି ନ ଥିଲା । କେବେ ସେ କେଉଁଠି ମଣିଷ ଥିଲା; ଏବେ ତା'ର ଧ୍ୱଂସ ମାତ୍ର ଅଛି ! ତାକୁ ଦେଖିଲେ ମନେହେଉଛି ସତେ ଅବା ସେ କବରଭିତରୁ ଉଠି ରାଜସରକାରରେ ପ୍ରଥମେ ପ୍ରବେଶ କରିଛି ।

ସେ ପଙ୍ଖା ଟାଣୁଥିଲା । ତା'ର ଶିରାବହୁଳ ହାତ ଦୁଇଟା ପ୍ରତି ଟଣାରେ ଆହୁରି ଟାଣି ହୋଇ ଯାଉଥିଲା । ସେ ଶିରାରେ ରକ୍ତ ନ ଥିଲା; ଥିଲା ନୀଳବର୍ଣ୍ଣର କିଛି ଗୋଟାଏ ରସ । ବେକଟା ତା'ର କେତେବେଳେ ହେଲେ ସିଧା ହେଉ ନ ଥିଲା । ସତେ ଯେପରି କି କିଛି ଗୋଟାଏ ଅମୂଲ୍ୟ ରତ୍ନ ସେ ହଜାଇ ଦେଇ ତଳକୁ ଚାହିଁ ରହିଛି । କି କରୁଣ ଦୃଷ୍ଟି ତା'ର ! ବଦନମଣ୍ଡଳରେ ଜଗତଯାକର ମନର ଭାବନା ଏକାଠି ଜମାହୋଇଥିଲା—ସତେ ଅବା କେବେ ସେ କାନ୍ଦିଥିଲା, ଏବେ କିନ୍ତୁ ତା' ଆଖିରେ ଲୁହ ନାହିଁ । କେବେ ସେ ହସିଥିଲା, ଏବେ କିନ୍ତୁ ସେ ଅଧରତଳେ ହାସ୍ୟରେଖାର ଛାୟା ନାହିଁ । ବାଳଗୁଡ଼ାକ ମୁକୁଳା, ତା'ର ଧୂସର ଦେହଟା କେବଳ ଶିରାମୟ ।

ଏଇ ଯେ ଲୋକଟି, ପ୍ରଥମେ ତାକୁ ଦେଖିଲାମାତ୍ରେ ଆମ ଭିତରେ ଘଣ୍ଟାଏକାଳ ଆଲୋଚନା ଚାଲିଲା । ମୋର ବନ୍ଧୁବର କହିଲେ :

—"ଏଇ ପଙ୍ଖାରେ ଯେ ପବନ ହେଉଛି ଏହାକୁ କଣ କୁହାଯାଇପାରେ ?"

ମୁଁ କିଛି ବୁଝି ନ ପାରି କହିଲି—"ପବନ ତ, ଆଉ କୁହାଯିବ କ'ଣ ?"

ବନ୍ଧୁ ଶୁଖିଲା ମୁହଁରେ ହସର ଟିକିଏ ମାତ୍ର ଆଭାସ ଦେଖାଇ କହିଲେ—"ନା, ଏ ପବନ ନୁହେଁ; ଏ ନିଃଶ୍ୱାସ । ଏ ଲୋକଟାର ପ୍ରତି ଟଣାରେ ଯେ ଦୀର୍ଘନିଃଶ୍ୱାସ ଉଠୁଛି ତାହାର ସଞ୍ଚାଳନ ଆମର ଦେହରେ ବାଜୁଛି ।"

କଥାଟା ମନକୁ ବଡ଼ ଘେନାଇଲା । କ୍ଷଣେ ନୀରବ ରହିଲି । ସେ ଲୋକଟି କିନ୍ତୁ ଆମର ଏ ଆଲୋଚନା ଶୁଣି ନ ଶୁଣିଲା ପରି ତା' କାର୍ଯ୍ୟରେ ଲାଗିଥାଏ । ସେପରି ଜୀବ ଯେ ଆମପରି ରାଜ-ଅତିଥିଙ୍କ ଉଦ୍ଦେଶ୍ୟରେ ସମାଲୋଚନା ବୁଝିପାରିବ ଏକଥା ଆମେ କଳ୍ପନା କରି ନ ଥିଲୁ; କିନ୍ତୁ ଦେଖିଲୁ ଆଲୋଚନା ସଙ୍ଗେସଙ୍ଗେ ତା'ର ମୁହଁର ରଙ୍ଗ ବଦଳୁଛି । ସେ ଟିକିଏ ଉପରକୁ ଚାହିଁଛି । ତା'ର ଓଠତଳ ଟିକିଏ ଫୁଲିଉଠିଛି । ତା'ର ଆଖି ଟିକିଏ ସତେଜ ଦିଶୁଛି । ସେ ପ୍ରେତ ଦେହରେ ଏ ମନୁଷ୍ୟର ଲକ୍ଷଣ ବଡ଼ ଆଶା ଓ ଆନନ୍ଦର କଥା । ଆମେ ଆଲୋଚନା ଛାଡ଼ି ତା'ର ଆଡ଼କୁ ଚାହିଁ ରହିଲୁ । ସେ ତା'ର ଦୀର୍ଘ ନୀରବତା ଭାଙ୍ଗି ଏପାଖ ସେପାଖ ଟିକିଏ ଚାହିଁ କହିଲା—"ବୁଝିଲ ବାବୁ, ମୁଁ ମଣିଷ ।" ଏତିକି କହି ସେ ଆମ ମୁହଁକୁ କେବଳ ଚାହିଁରହିଲା । ମଣିଷର ସେ ଦୁରବସ୍ଥା ଦେଖି ମୁଁ ସେତେବେଳେ ବିହ୍ୱଳ ହୋଇପଡ଼ିଥିଲି । ନିଜକୁ ନିଜେ ଆୟତ୍ତ କରିପାରିଲି ନାହିଁ । ତାହାରି ଆଡ଼କୁ ଗୋଟିଏ ପାଦ ଚାଲିଯାଇ ଆଗ୍ରହ ଉତ୍ସାହରେ କହିପକାଇଲି—"ଭାଇ, ତୁ ମଣିଷ । ବୁଝିଛି ମୁଁ, ତୁ ମଣିଷ··· ତେବେ ତୋର ଏ ପ୍ରେତ ବେଶ କାହିଁକି ?"

ଲୋକଟି ନିଜର ହାତଗୋଡ଼କୁ ଥରେ ଚାହିଁଦେଇ କହିଲା—"ହଁ, ମୁଁ ମଣିଷ । ମଣିଷ ଭିତରେ ମୁଁ ବଢ଼େଇ ।"

ଏତିକି କହି ସେ ପୁଣି ମୁଣ୍ଡ ପୋତିଦେଲା । ଏହି ବଢ଼େଇ ମଣିଷ ଭିତରେ ଯେ ଏକ ବିରାଟ ଇତିହାସ ଲୁଚିରହିଛି, ଏକଥା ଆମେ ବୁଝିପାରିଲୁ । ପଚାରିଲୁ :

—"ହଉ, ଟେଣା ବନ୍ଦ କର ଭାଇ ! ଆଚ୍ଛା କହ ଦେଖି, ବଢ଼େଇ ହୋଇ ପଙ୍ଗା ଟାଣିଲୁ କାହିଁକି ?"

ସେ ଲୋକଟା ଦଉଡ଼ିଟା କେବଳ ହାତରେ ଧରି ତା' ଜୀବନର କ୍ଷୁଦ୍ର ପରିଚୟଟି ଦେଲା :

—"ଏଇ ଯେ ଖଟରେ ଶୋଉଚ, ଏଇ ଯେ କୁରୁଚିରେ ବସୁଚ, ଆମରି ଜାତି ତାହା କରନ୍ତି । ଏଇ ହାତରେ ମୁଁ ଏସବୁ କରିଛି । ସେ କଥା ତୁମେ ଶୁଣି କି ଲାଭ ?"

କିଚାଲି ଉପ୍ଟାଳି ପରି ସେ ପୁଣି ଥରେ ଏପାଖ ସେପାଖ ଚାହିଁଦେଇ ଆରମ୍ଭ କଲା ;

—"ବଡ଼େଇଘରର ପୁଅ ମୁଁ । ମୋ' ବାପ, ବଡ଼ବାପ ରଜାଘର ଉଆସ ସଜାଉଥିଲେ । କାଳ ଆସିଲା ଆଉ ଏ ବ୍ୟବସାୟ ବନ୍ଦ ହୋଇଗଲା ନାହିଁ । ଆମେ ହେଲୁ ଗରିବ । ହତଭାଗା ଗୁଡ଼ ଲଙ୍ଗଳର ଆଶ୍ରୟ ନେଲୁ । ଏହିପରି ସମୟରେ ଦିନେ ରାଇଜସାକ ହୁରି ହେଲା—ରାଜା ଆମର କାରିଗରି କାମକୁ ଭାରି ପସନ୍ଦ କରୁଛନ୍ତି । ତାଙ୍କ ଆଗରେ ପଣ୍ଡିତ ଯେମିତି, କାରିଗର ସେମିତି । ପଣ୍ଡିତ-ସଭା କଲାପରି ସେ ଅମୁକ ଦିନ ଅମୁକ ସମୟରେ ଗୋଟିଏ ସଭା କରାଇବେ । ସେଠାରେ ରାଜ୍ୟରେ ଯେତେ କାରିଗରି ଜିନିଷ ଥିବ, ସବୁ ଜମାହେବ । କାରିଗରଙ୍କ ଭାଗ୍ୟ ବଦଳିଯିବ ।

ଏକଥା ଶୁଣି ମୋ ଶିରର ରକ୍ତ ତାତିଗଲା । ମୁଁ ଜିଦ୍‌ଖଣ ବାନ୍ଧି ଧରିଲି । ଠିକ୍ କଲି ଗୋଟିଏ କୃଷ୍ଣମୂର୍ତ୍ତି ତିଆରି କରି ରଜାଙ୍କୁ ଭେଟିବି । ଦିନ ରାତି ମୋର ସେଇ ଚିନ୍ତା ହେଲା । ହାତରେ କଉଡ଼ାଏ ପଇସା ନ ଥାଏ, ଘରେ ଯାହା କଂସା ବାସନ ଥିଲା ପରଦୁଆରେ ବନ୍ଧକ ଥୋଇଦେଇ ଟଙ୍କା ଦଶଟି ଆଣି କାମ ଆରମ୍ଭ କରିଦେଲି ।

କୃଷ୍ଣମୂର୍ତ୍ତି—ନବଘନଶ୍ୟାମ କୃଷ୍ଣମୂର୍ତ୍ତି, ବଂଶୀଧାରୀ କୃଷ୍ଣମୂର୍ତ୍ତି ଦେଖୁ ଦେଖୁ ମୋର ହାତଆର ମୂଳରେ ସୃଷ୍ଟି ହେଲା ! ପାଟ କନାରେ ପୋଛି ମୁଣ୍ଡରେ ଥୋଇ ଗଲି ରାଜଦର୍ଶନକୁ ।"

ଏହି କଥା କହି ସେ ପୁଣି କ'ଣ ଟିକଏ ଭାବିଲା । ତା'ପରେ ଥରେ ଦି'ଥର ଢେମ ଢୋକ ଆରମ୍ଭ କଲା :

—"ରଜା, ରାଜପରିଷଦ, ପାତ୍ର, ମନ୍ତ୍ରୀ, ଦିଆନ ସେ ମୂର୍ତ୍ତି ଦେଖି ସତେ ଧନ୍ୟ ଧନ୍ୟ କଲେ । ବଡ଼ିଗଲି ଭାଗ୍ୟ ଲେଉଟିଲା । ଏ ଯେ ଶୁଭ ଦୃଷ୍ଟି ! ଏଥିରୁ କି ସଂପଦ ବର୍ଷିବ କିଛି କଳ୍ପନା କରିପାରିଲି ନାହିଁ । ଆନନ୍ଦରେ ଆଖିରୁ ଲୁହ ବୋହିପଡ଼ିଲା । ଆଗରେ କରଯୋଡ଼ି ଠିଆହେଲି ।"

ଏହା କହି ସେ କର ଯୋଡ଼ିଦେଲା; ସତେ ଅବା ରାଜାଙ୍କ ଆଗରେ କର ଯୋଡ଼ିଛି ! ତା'ପରେ ବୋଧ ହୁଏ ଆମକୁ ଅତିଥି ବୋଲି ଚେତନାରେ ଆଣି ଗୋଟିଏ ହାତରେ ଦଉଡ଼ିଟାକୁ ଧରି କହିଲା—

"ଶ୍ରୀମୁଖରୁ ହୁକୁମ ହେଲା—ତୁମର ଏ କାର୍ଯ୍ୟ ଦେଖି ତୁମକୁ ଆମେ 'ବଡ଼େଇରତ୍ନ' ଶାଢ଼ୀ ଦେଲୁ ।

ବଧାତା ! ମୋ ଗୋଡ଼ତଳୁ ପୃଥିବୀଟା ଖସିଗଲାପରି ଲାଗିଲା । ଉପୁଡ଼ି ହେଲା ପଡ଼ିଗିବ । ଭାବିଲି, ଏ ଯେ ଶାଢ଼ୀ ମିଳିଲା, ଏଥିରେ ମୁଁ ଦଶ ଟଙ୍କା ଶୁଝେଁ କିପରି ?

ଏତିକିରେ ରକ୍ଷା ପାଇଲେ ନିଜକୁ ଭାଗ୍ୟବାନ୍ ଭାବିଥାନ୍ତି, କିନ୍ତୁ କି ଅଶୁଭବେଳରେ ହାତଆରି ଧରିଥିଲି; ଶାଢ଼ୀ ମିଳିବା ସଙ୍ଗେସଙ୍ଗେ ଜାତିଲୋକେ ଧରିବସିଲେ ଭୋଜି ନ ଦେଲେ ଶ୍ରୀଯାମୁଙ୍କୁ ଅପମାନ ।

ଶ୍ରୀଯାମୁଙ୍କୁ ଅପମାନ ! ଏକା ମୁଁ ଦରିଦ୍ର ସହିପାରେ; ମାତ୍ର ଯେଉଁମାନେ ଭୋଜି ଖାଇବେ ସେମାନେ ସହିବେ କିପରି ? ତେଣୁ ରାଜ୍ୟ, ରାଜା ଓ ଜାତିଭାଇଙ୍କୁ ଅପମାନରୁ ରକ୍ଷା କରିବାପାଇଁ ଆଉ ଚାଳିଶିଟଙ୍କା କରଜ କଲି, ଆଗର ଦଶଟଙ୍କାକୁ ମିଶାଇ ପଚାଶଟଙ୍କାକୁ ଖଣ୍ଡିଏ ହ୍ୟାଣ୍ଡନୋଟ୍ ଲେଖିଦେଲି । ଶାଢ଼ୀ ମିଳିବା ଭୋଜି ସରିବାପରେ ଏ 'ବଡ଼େଇରନ୍ତ'ଙ୍କ ଅବସ୍ଥା ଗାଆଣୀ ଗାଇଲି ନାହିଁ । ଶେଷରେ ଯାହା ଥିଲା ସ୍ଥାବର ସମ୍ପତ୍ତି କରଜ ବାବଦକୁ ଦେଇ, ପିଲା-କୁଟୁମ୍ବଙ୍କୁ ପରଦୁଆରେ କୁଡ଼ିଆ ଖଣ୍ଡିକରେ ଆପିଦେଇ ଏ 'ବଡ଼େଇରନ୍ତ' ଗଲେ ରୋଜଗାରପାଇଁ ରେଙ୍ଗୁନ ।" ଏହା କହି ସେ ତା'ର ହାତ ଗୋଡ଼ ଓ ମୁଣ୍ଡରେ ଅଭିନୟ କରି କହିଲା—

"ଏଇ ବେଶରେ ରେଙ୍ଗୁନରୁ ଫେରିଲି ସାତବର୍ଷପରେ । ଦେଖିଲି, ଯାହାଙ୍କର ରଙ୍ଗିନ ଆଶାରେ ଅକୂଳ ସମୁଦ୍ର ପାରି ହୋଇ ଆସିଥିଲି, ସେମାନେ ମୁଠାଏ ଅନ୍ନ ଅଭାବରେ ଏ ସଂସାର-ସମୁଦ୍ରର ଆରପାଖକୁ ଚାଲିଯାଇଛନ୍ତି । କପର୍ଦ୍ଦକହୀନ ଏ ଶାଢ଼ୀବନ୍ଧା 'ବଡ଼େଇରନ୍ତ' କେଜାଣି କାହିଁକି ପ୍ରାଣର ମମତା-ଟିକିକ ଏପର୍ଯ୍ୟନ୍ତ ଛାଡ଼ିପାରି ନାହିଁ । "ଶ୍ରୀଚାମୁ" ଏବେ ତାଙ୍କରି "ବଡ଼େଇରନ୍ତ"ଙ୍କୁ ଏହି ବ୍ୟବସାୟରେ ପେଟଭାତକୁ ରଖିଛନ୍ତି । କହ ବାବୁ, ଆପଣମାନେ କିଏ ?"

ଏହା କହି ସେ ପଙ୍ଖା ଦଉଡ଼ିଟାକୁ ଟାଣିଦେଲା । ଚିତ୍ରପିତୁଳାପରି ଆମେ ସ୍ଥିର ରହି ତା' ଜୀବନର କାହାଣୀ ଶୁଣୁଥିଲୁ । ଚମକି ଦେଖିଲୁ ସେ ସେହିପରି ମୁଣ୍ଡପୋତି ପଙ୍ଖା ଟାଣିବାରେ ଲାଗିଛି । ବିସ୍ମରିଲୁ, ଏ ସ୍ୱପ୍ନ ନା ସତ୍ୟ !

● ● ●

# ଚୋର ଦାସିଆ

କେବଳ ଚୋରି କରି କରି ଦାସ ପରିଡ଼ାର ନାଁ "ଚୋର ଦାସିଆ ।"

ଚୋର ଦାସିଆ ସାଠି ବର୍ଷର କଏଦୀ । ଏହାପୂର୍ବରୁ ସେ ଆଠଥର ଜେଲ ଯାଇଥିଲା ।

ଦିନେ ଜୀବନର ସଂଧ୍ୟାବେଳେ ଚୋର ଦାସିଆ ନିଜର ପ୍ରିୟ ଜନ୍ମଭୂମି ଗବପଦର ଗାଁକଥା ଭାବିବସିଲା । ସେ ସମୟଟା କାର୍ତ୍ତିକ ମାସର ସଂଧ୍ୟାବେଳ । ପଶ୍ଚିମ ଗଗନର ରଡରଡିଆ ରଙ୍ଗ ମେଘକୋଳେ ଧଳାପରଦାଟିଏ ବଳୟ ବାନ୍ଧିଲାପରି ଭାଲେଶ୍ୱ ଏବଂ ଖଣ୍ଡାଧାରା ପର୍ବତର କପାଳଦେଶ ଯୋଡ଼ିଦେଇ ଫୁଟିଦିଶୁଥିଲା ।

ଗାଡ଼ିରୁ ଓହ୍ଲାଇବାକୁ ଦୁଇଟା ଷ୍ଟେସନ ଥିଲା, ଚୋର ଦାସିଆ ନିଜ ନାଁ ନିଜେ ମନେ ମନେ ଭାବି କେତେଥର ଚମକିଲା । କେତେଥର ସେ ନିଦରୁ ଉଠିଲା ପରି ଆଖି ମେଲେଇ ଚାହିଁଲା । ଘର୍ ଘର୍ କରି ଗାଡ଼ିଟା ବାଲୁଗାଁ ଷ୍ଟେସନରେ ରହିଲା—ଜନକୋଳାହଳରେ ପ୍ଲାଟଫର୍ମ ପୂରିଉଠିଲା । ଚିଲିକାର ସେପାଖରୁ ଦମକାଏ ଥଣ୍ଡାପବନ ବହିଆସି ସମସ୍ତଙ୍କ ଦେହରେ ସାମାନ୍ୟ ଲୋମ ଟାଙ୍କୁରାଇ ଦେଇଗଲା । ଟିକଟ ଖଣ୍ଡିମାନ ଦେଇ ଯେଝା ଗନ୍ତବ୍ୟପଥରେ ଯେ ଯୁଆଡ଼େ ଯାତ୍ରୀ ଗଲେ; ମାତ୍ର ଚୋର ଦାସିଆକୁ ଆଲୁଅରେ ମଧ୍ୟ ବାଟ ଦିଶିଲା ନାହିଁ । ସାଠି ବର୍ଷପରେ ସେ ମଣିଷ ହୋଇ ଫେରୁଛି କି ଆଉ କଣ ହୋଇ ଫେରୁଛି, ବହୁତ ଭାବି ମୁସାଫିରଖାନାର ପଛପଟେ ଯାଇ ଠିଆହେଲା । କିଛି ସମୟପରେ ଆଗରେ ନେଳି ପଗଡ଼ିବନ୍ଧା ଏକ ଚପରାଶିକୁ ଦେଖି ତା'ର ମୋହନିଦ୍ରା ଭାଙ୍ଗିଲା । ଚମକିପଡ଼ି ସେ ପଶ୍ଚିମମୁଖା ପାଦ ଚାଲିଲା । ବାଟ ଚାରି ମାଇଲ, ଶେଷରେ ସେ ତା'ର ଘର ଭେଟିବ । ସେତେବେଳକୁ ମାଟ୍ଟି-ଅନ୍ଧାର ହୋଇଯାଇଥିବ । ସେତେବେଳେ ମୁହଁ ବାରି ହେଉ ନ ଥିବ; ହଠାତ୍ ସେ ଘରେ ଯାଇ ପହଞ୍ଚିବ !

ଓହୋ ! ତା' ମନ ଭିତରେ ଝଞ୍ଜା ସୃଷ୍ଟି ହେଲା । ଘରକୁ ଯିବ ! ଦୁଇଟି ବଡ଼ ବଡ଼ କଳା କଳା ଆଖି ଆସି ତା ଆଖି ପାଖେ ନାଚିଲା । ଦୁଇଟା ସୁଗୋଲ ସୁନ୍ଦର ହାତ ତା' ଗୋଡ଼ତଳେ ଆସି ଲଗିଲାପରି ଲାଗିଲା—ଘରର ଘରଣୀ ହୀରାମଣିର ମୁହଁଟି ଆଗରେ ସକାଳ ବେଳାର ପଦ୍ମଫୁଲ ପରି ଫୁଟିଉଠିଲା । ତା' ପାଖେ ପାଖେ ପୁଣି ଆହୁରି ଚାରି ଛଅଟି ଛୋଟ ଛୋଟ ଆଖି, ଆହୁରି ଚାରି ଛଅଟି ଛୋଟ ଛୋଟ ହାତ, ଆହୁରି କେତୋଟି ଉଚ୍ଛଳ କଳକଳ ସ୍ୱର··· ଏସବୁ ଏକାଠି ଆସି ତାକୁ ବାଟରୁ ଅଭ୍ୟର୍ଥନା କରି ନେଇଯିବାପାଇଁ ତତ୍ପର !

କିନ୍ତୁ ଏସବୁ ଯେ ସାତ ବର୍ଷ ପୂର୍ବର କଥା ! ମନେପଡ଼ିଗଲା, ସେ ଏ ମଧ୍ୟରେ ସାତ ବର୍ଷ କଟାଇ ଆସିଛି । ଏ ଭିତରେ ସେହି ହାତ, ସେହି ଆଖି, ସେହି ମୁହଁ କ'ଣ ଏକାପରି ଥିବ ? ସେହି ସ୍ୱର କଣ ଏକାପରି ଶୁଭୁଥିବ ? ସବୁ ତ ବଦଳିଯାଇଥିବ । ତାକୁ ଯଦି କିଏ ଦୁଆରମୁହଁରେ ଚିହ୍ନି ନ ପାରିବେ, ସେ ଯେବେ କାହାକୁ ଆପଣାର ବୋଲି ବାରି ନ ପାରିବ··ତେବେ କଣ ହେବ ! ତା' ପକ୍ଷରେ ଏ ଏକ ମହାସମସ୍ୟା ହେଲା ।

ଦାସିଆର ଦେହ, ମନ ଜଡ଼ ହେଲାପରି ଲାଗିଲା । ଗାଁମୁଣ୍ଡ ବରଗଛ, ଗାଁ ଶେଷ ପାଖ ବିଲ କିଆରି, ଗାଁ ଭିତରର ତୁଳସୀ ଚଉଁରା, ଗାଁର ବୁଢ଼ା ରଘୁ ପାଇକରା, ଗାଁର ପୁରୁଣା ଭାଗବତପିଣ୍ଡି···ଏସବୁର ଛବି ତା' ଆଖିଆଗରେ ଆସି କେତେ ବେଗେ କେତେ ବେଶରେ ନାଚିଗଲେ । ଏହିପରି ସମୟରେ ଖୁବ୍ ଦୂରରେ ଦୁଇଟି ତାରାର ପାଖାପାଖି ଆକାଶଦୀପର ମିଞ୍ଜି ମିଞ୍ଜି ଆଲୁଅ ଦେଖାଗଲା । ଦାସିଆ ବାରିଲା, ଏ ଯଦି ହୀରାମଣିର ତୁଳସୀ ଚଉଁରାର ବତି ହୋଇଥିବ·· ଏ ଆକାଶଦୀପକୁ ସେ ଯେବେ ମୋହର କାମନାରେ ସନ୍ଧ୍ୟା ପରେ ସନ୍ଧ୍ୟା ଗଣୁଥିବ···

ପାଦ ଦୁଇଟା କେତେବେଳେ ଥକିଲା, କେତେବେଳେ ଚାଲିଲା । ଜଣା-ଯାଉଥିଲା, ସେ ପଦେ ପଦେ ନାନା ଭାବନାରେ ଛନ୍ଦି ହୋଇପଡ଼ୁଥିଲା । ହଠାତ୍ ଦୂରରେ ଗାଁ ଗହଳ ଶୁଭିଲା । ସେତେବେଳକୁ ଅନ୍ଧାର ମାଡ଼ିଆସୁଥିଲା, ବିଲ-ମାଳରେ କେବଳ ବେଙ୍ଗଗୁଡ଼ାକ ହିଡ଼ତଳ ପାଣିକୁ ଡେଇଁପଡ଼ି ପଥିକର ପଦା-ଘାତରୁ ରକ୍ଷାପାଉଥିଲେ । ଧାନ କିଆରିର ଥୋଡ଼ମଞ୍ଜି ଧାନମୁଳା ସବୁ ଉଦ୍‌ଗ୍ରୀବ ଭାବରେ ଆକାଶର ଚଳା ମେଘମାଳାକୁ ଚାହିଁରହିଲା ପରି ଦିଶୁଥିଲେ । କେଉଁ ହିଡ଼ତଳେ ମନ୍ଦ ପାଣି ଚାଖଣ୍ଡେ ଓସାର ବାଳି ଶେଯରେ ଶୋଇ କୁଳୁକୁଳୁ ରବରେ ଆର କିଆରିକୁ ବହିଯାଉଥିଲା । ପବନସୋତରେ ସେତେବେଳେ

ଧାନପତ୍ରଗୁଡ଼ିକ ଖସ୍‌ଖସ୍ ଶବ୍ଦ କରି ଗ୍ବେର ଦାସିଆର ଭାବନାକ୍ଲାନ୍ତ ମନକୁ ଦୂରର ଆକାଶଦୀପ ଆଡ଼କୁ ନେଉଥିଲା !

ଗାଁର ଗୋହିରୀ ବାଟ ପଡ଼ିଲା । ଜଣାପଡ଼ିଲା, ସେ ଯେପରି ତା'ର ଜୀବନର ଏକ ମହା-ଗୋହିରୀ ପଥରେ ଚାଲିଛି । ଆଗ ପଛରେ ସେ କାହାକୁ ଦେଖିଲା ନାହିଁ । ଏକାକୀ···ଏକାକୀ ଗ୍ବେର ଦାସିଆ ଗୋହିରୀ ଶେଷରେ ଯାଇ ଠାଏ ଥକାମାରି ଠିଆହେଲା । ଗାଁଦାଣ୍ଡରେ ପିଲେ ଖେଳୁଥିଲେ, ପିଣ୍ଡାରେ ଠା-ଠା ହୋଇ ଲୋକ ବସି ବାରଆଡ଼ର ବାରକଥା ପକାଇଥିଲେ । କେଉଁ କିଆରିରେ ପାଣି କେତେ ଓ କେଉଁ ଧାନର ଫଳ କିପରି, ମଧୁ ପରିଡ଼ା ଓ ଦାମ ସ୍ବାଇଁକର ଏ ବର୍ଷ ଧାନ କଟାହେବାବେଳେ ଫୌଜଦାରୀ ହେବା ସମ୍ଭାବନା ଅଛି କି ନାହିଁ, ଇତ୍ୟାଦି କେତେ ରକମର ଗପ ! ଦେଉଳର ପଥରମୂର୍ତ୍ତିପରି ନିଶ୍ଚଳ-ଭାବରେ ରହି ଦାସିଆ ସବୁ ଶୁଣିଲା ।

ପିନ୍ଧିବା ଲୁଗାଖଣ୍ଡିକ ଛଡ଼ା ତା'ପାଖରେ ଆଉ ଲୁଗା ନ ଥିଲା; ମୁଣ୍ଡରେ କେବଳ ଫଟେ ଛିଣ୍ଡା ଗାମୁଛା ଗୁଡ଼େଇ ଦେଇଥିଲା । ସାତ ବର୍ଷପୂର୍ବେ ଯେଉଁ ବେଶରେ ସେ ଯେଉଁ ଗାଁରୁ ସେହି ଗୋହିରୀ ବାଟେ ଧରା ହୋଇ ଯାଇଥିଲା, ସାତ ବର୍ଷପରେ ସେହି ସପନ୍ତର ସେହିପରି ଏକ ସଂଧ୍ୟାବେଳେ ସେ ସେହିଠାରେ ଆସି ଠିଆ ! ଗଲାବେଳେ ଅପରାଧୀଭାବରେ ସେ ବଡ଼ ସଂକୋଚରେ ପାଦ ଚାଳୁଥିଲା; ଏବେ ଫେରିଲାବେଳେ ତହୁଁ ବଳି ଶତଗୁଣ ସଂକୋଚରେ ଠିଆହେଲା । ଏପାଖେ ସେପାଖେ କିଆବାଡ଼କୁ ଚାହିଁଲା, ହତାଶ ପଥିକପରି ଥରେ ଆକାଶ ଉପରକୁ ଆକାଶଦୀପକୁ ଆଖିପକାଇ ଗୋଟାଏ ଗୋଟାଏ ଦୀର୍ଘନିଃଶ୍ୱାସ ଛାଡ଼ିଲା ।

ସେତେବେଳକୁ ରାତି ଦୁଇ ଘଡ଼ି ହେବ । ଗାଁର ମକଦମଙ୍କ ଘରପିଣ୍ଡା ଛଡ଼ା ବାକି ସବୁ ପିଣ୍ଡାରୁ ଗହଳ କମିଆସିଲା । ଜୀବନରେ କେତେ ରାତି ସେ ସେହି ଦାଣ୍ଡରେ ଚାଲିଛି; କିନ୍ତୁ ସେସବୁ ଚାଲିଠାରୁ ଏଥର ଚାଲି ଭିନ୍ନ ପ୍ରକାର ହେଲା । ସେଇ ଅନ୍ଧାର ଭିତରେ ସେ କ୍ଷୀଣ ଆଲୋକ ଦେଖିପାରୁଥିଲା; କିନ୍ତୁ ଆଜିର ଏ ଅନ୍ଧାର ଭିତରେ ତାକୁ ଜଗତ-ସଂସାର କିଛି ଦେଖାଗଲା ନାହିଁ । କେବଳ ହରିମଣିର ବଡ଼ ବଡ଼ ଛଳଛଳ ଆଖିପରି ଆକାଶର ତାରାଗୁଡ଼ାକ ତାକୁ ନାନା ରହସ୍ୟମୟ ଦେଖାଗଲେ । ସାନ ସାନ ପିଲାଗୁଡ଼ିକ ପରି ପବନ ତା'ର ପିନ୍ଧିବା ଲୁଗାକାନିଟା ହଲାଇ ଦେଇ ବହିଗଲା· ସେ ଚମକି ଠିଆହେଲା···

ଏକ, ଦୁଇ, ତିନ, ଚାରି···ଶ୍ୱେର ଦାସିଆ ଏ ମୁଣ୍ଡର ଘର ପାହାଚ ଗଣିଗଲା । ମନେ ମନେ ଠିକ୍ କରିନେଲା, ଏଇଟା ଦାସଙ୍କ ଘର, ସେଇଟା ପଲେଇଙ୍କ ଘର, ସେଇଟା ପଧାନଙ୍କ ଘର । ସୁନ୍ଦରଗଡ଼ର ପଡ଼ଶାଘର ତାର ଘର । ଗଣି ଗଣି ଯାଇ ସେ ଏକ ଘର ପାଖେ ଠିଆହେଲା । ମନରେ କେତେ ଦୋ-ଦୋପାଞ୍ଚ ଭାବନା ଆସିଲା । ପାହାଚ ଉପରେ ପାଦଦେଇ ପୁଣି ଥରେ ଚାରିଆଡ଼କୁ ଚାହିଁଲା । ତାର ମନେପଡ଼ିଲା ଦାଣ୍ଡଦୁଆର ନଡ଼ିଆ ଗଛ କଥା । ସାତବର୍ଷ ତଳେ ତାର ନଡ଼ିଆ ଗଛ ଦୁଇଟା ବୁକେ ଉଚ୍ଚରେ କଣ୍ଟା ମେଲାଇ ଚଅଁର ପକାଇଥିଲେ, କାହିଁ ସେ ଗଛ ଦୁଇଟା ତ ସେଠି ଦୁଆରମୁହଁରେ ନାହିଁ ! ସେ ଭୟ ସଂକୋଚରେ ପାହାଚ ଉପରୁ ପାଦ କାଢ଼ିଆଣିଲା ।

ପୁଣି ଆଗକୁ ଚାହିଁଲା—ଦଶବାର ହାତରେ ଗଛର କ୍ଷୀଣ ଛାଇ ବାରିହେଲା । ମୁହୂର୍ତ୍ତେକ ଦେଖିଲା କେଉଁ ଯୁଗର ପ୍ରକାଣ୍ଡକାୟ ବୃଦ୍ଧବୃକ୍ଷ ସଦୃଶ ପରି ଦୁଇଟା ଗଛ ଆକାଶକୁ ଉଠୁଛନ୍ତି । ଉପରେ ଗଛ ବାହୁଙ୍ଗା ଭିତରେ କେତେଟା ବଗ ସେ ରାତିରେ ବସା ବାନ୍ଧି ରହିବାକୁ ଆସି ବଗବଗ ପକ୍ଷୀ ଫଡ଼୍ ଫଡ଼୍ କରି ପ୍ରଦୋଷକାଳୀନ ଆସନ୍ନ ନୀରବତା ଭଙ୍ଗ କରୁଥିଲେ । ଶବ୍ଦ ଶୁଣି ଦାସିଆ ଉପରକୁ ଚାହିଁଲା । ତାକୁ ଦେଖାଗଲା, ସତେ ଯେପରି ଗଗନର ତାରା-ରାଜ୍ୟକୁ ଛୁଇଁବାପାଇଁ ଗଛ ଦୁଇଟା ପାଖ ପାଖି ମୁଣ୍ଡ ଟେକି ରହିଛନ୍ତି । ସେହି ଗଛ ଉପରେ ରହି ତାରା-ରାଜ୍ୟକୁ ଯିବାପାଇଁ ବଗଗୁଡ଼ାକ ସତେ ଯେପରି କଳି ଲଗାଇବାରେ ବ୍ୟସ୍ତ ଅଛନ୍ତି ।

ଦାସିଆର ସ୍ମୃତିରାଜ୍ୟରେ ଧୀରେ ଧୀରେ ନବ ଭାବନାର ଛାଇ ପଡ଼ିଲା । ଗଛ ଦୁଇଟା ତା'ର ହାତ ପାଖାପାଖି ନ ଥିଲେ ସେଇଠାରେ ସେ ଭ୍ରମରେ ପଡ଼ିଯାଇଥାଆନ୍ତା । ହଠାତ୍ ଗୋଟେ ଗଛକୁ ଭରଦେଇ ଠିଆହୋଇଗଲା । ମାତ୍ର ମନଟା ତାର ବାତଚକ୍ରପରି ଉଡ଼ିଲା । ବିଚାରିଲା ତେବେ କଣ ଗାଁଟା ଗଡ଼ପଦର ନୁହେଁ ? ନା, ଗଡ଼ପଦର ଗାଁ । ପରିଡ଼ା ଘରର ଚଉଁରା ଅଛି, ପଧାନ ଘରର ଖମାରଘର ଅଛି, ଦାସଙ୍କ ଘରର ମେରଦା ଅଛି···କାଲୁ···ଶ୍ୱେର ଦାସିଆର ଘର କାହିଁ ?

ଟିକଏ ଥମ୍ଭି ଧରି ଦାସିଆ ଦୁଇ ନଡ଼ିଆଗଛ ମଝି ସିଧା ଉପରକୁ ଗୋଡ଼ ବଢ଼ାଇଲା । ଆଣ୍ଠୁଏ ଘାସ ମାଡ଼ିରହିଛି, ତା' ଭିତରେ ପଥର ପାହାଚ ! ଗୋଡ଼ ମାରିବା ସଙ୍ଗେ ସଙ୍ଗେ ଦାସିଆ ଦେହ ଭିତରେ ବିଦ୍ୟୁତ୍‌ର ତରଙ୍ଗ ଖେଳିଗଲା ।

ବସ୍ଥିରଲ, ସତେ ଅବା ତା'ର ସେହି ହାତଗଡ଼ା ପାହାଚ ସାତବର୍ଷ କାଳ ତାହାର ଅଭାବରେ ଘାସ ଭିତରେ ଲୁଚିରହିଛି । ପାଦ ବଢ଼ାଇଲା, ପାଦ ଖସିଲା… ପାହାଚଉପରେ ପାହାଚ, ଦଶ କ ଏଗାର ପାହାଚ…ଗମ୍ଭୀର ସ୍ମୃତି-ସମୁଦ୍ରରେ ବୁଡ଼ି ସେହି ଘାସମଡ଼ା ପାହାଚଉପରେ ପାଦ ଦେଇ ଦେଇ ସେ ଯାଇ ମେଲି ଡିହଉପରେ ଠିଆହେଲା ।

ସେତେବେଳକୁ ତା'ର ଦେହଟା ସେହି ପଥର-ପାହାଚପରି ନିର୍ଜୀବ ହୋଇଆସିଥିଲା । କାର୍ତ୍ତିକ ମାସର କାକରମିଶା ପବନ ଦମକାଏ ଆସି ତା'ର ଦେହ ଛୁଇଁଦେଇଗଲା । ଘର-ଛଅ ମାସ ବୟସର ଘାସଗୁଡ଼ାକ ଭିତରେ କେତେ ପ୍ରକାରର ମଶା ମାଛି ପୋକ ବସା ବାନ୍ଧିଥିଲେ; ଭଣଭଣ ଗଣଗଣ ହୋଇ ତା'ର ଚାରିପଟେ ଘେରିଗଲେ । ସେଥିପ୍ରତି ତାର ଆଦୌ ନଜର ନାହିଁ । ଡିହ ଉପରେ ଠିଆ ହୋଇ ସେ ଚାରିଦିଗକୁ ଚାହିଁଲା । ତା'ର ଦୁଇପାଖେ ବାଜପକ୍ଷୀ ଶିକାର ଧରି ଡେଣା ମେଲେଇଲା ପରି ଦୁଇ ପଡ଼ଶାର କାଣ୍ଡମରା ଘରଚାଳ ଦୁଇଟା ସେହି ମେଲି ଡିହ ଉପରକୁ ଝୁଙ୍କିପଡ଼ିଥିଲେ । କେତେ ଦିନ…କେତେ ବର୍ଷ ତଳୁ ସେ ସେହି ଜମିଖଣ୍ଡିକ ଗବ୍ଭପଦର ଗାଁରେ ମେଲି ଡିହ ହୋଇପଡ଼ିଛି, ସେ ପ୍ରଶ୍ନର ଜବାବ ସେଠାରେ ଦାସିଆକୁ କେହି ଦେଲେ ନାହିଁ । ବାଧ ହୋଇ ନୀରବରେ ସେହି ମଶାବଣ ଭିତରେ ସେ ମେଞ୍ଚା ହୋଇ ବସିପଡ଼ିଲା !

ଅନ୍ଧାର ରାତି; ମାତ୍ର ଦାସିଆର ହୃଦୟ ଭିତରେ କେତେ ବର୍ଷତଳର ସ୍ମୃତି-ଦୀପ ଜଳିଉଠିଲା । ସେ ଦେଖିଲା—ତାର ପାଞ୍ଚ ବଖରା ଘର, ପନ୍ଦର ହାତ ଓସାରର ଅଗଣା; ସବୁ ପରିଷ୍କାର, ସବୁ ସ୍ୱଚ୍ଛ ସୁନ୍ଦର । ବାର ବରଷର ବାଳକକୁ ସେ ଭିତରେ ବାପ ମା' ଛାଡ଼ିଦେଇ ଏ ସଂସାରର ଲୀଳାଖେଳା ସାରି-ଦେଇ ଗଲେ । ବାର ବରଷର ମଫସଲି ବାଳକ ପ୍ରାଣରେ କେତେଥର ଆଶାର ଦୀପ ଜଳିଲା, ଲିଭିଲା । ବାହୁବଳରେ ସେ ଅଝାଡ଼ ଜଙ୍ଗଲରେ ପଶି, ଖରାଦିନେ ଖରାରେ ତାକୁ ଦେଖାଇ, ନଈବଢ଼ି ଭିତରେ ପହଁରି, ଭଲେଇ ଘଣ୍ଟଶିକା ଲଢ଼ି, କେତେପ୍ରକାର ସାହସ ଦେଖାଇଲା । ପେଟ ପୋଷିବାପାଇଁ କେତେ କଣ ଉପାୟ କରିବସିଲା । ତାହାର ସାହସକୁ ଲୋକେ ପ୍ରଶଂସା ଯେପରି କଲେ, ପେଟପୋଷା ଉପାୟକୁ ସେପରି ନିନ୍ଦା ମଧ୍ୟ କଲେ । ତା'ପରେ କେତେ ବର୍ଷ ଗଲା, ଜୀବନର ସଙ୍ଗିନୀ ଆସି ପାଖରେ ମିଳିଲା । ପାଞ୍ଚ ବଖରା ଘରକୁ ସେ ଆଲୁଅ କରିଦେଲା । ଯୁବକର ମନ ବଚନକୁ ସେ ଅଧିକାର କରିବସିଲା । ସେ ହସି ଯୁବକକୁ ହସାଇଲା, ସେ କାନ୍ଦି ଯୁବକକୁ କନ୍ଦାଇଲା । ଏହିପରି ଭାବରେ ତା' ଜୀବନପଥରେ ନାନା ଫୁଲ ଫୁଟିଲା ।

କ୍ରମେ ଯୁବକ ପରସ୍କାର ବାଟ ଭୁଲିଲା । ଗାଁରେ ତାକୁ ସ୍ୱେର କହିଲେ, ପାଞ୍ଚଖଣ୍ଡ ଗାଁରେ ତା' ନାଁରେ ଅପବାଦ ଶୁଣାଗଲା । ଶେଷରେ ତାକୁ ଜେଲ ଯିବାକୁ ହେଲା । ଥରେ ନୁହେଁ, ଦୁଇଥର ନୁହେଁ, ସାତଥର ଜେଲ ଗଲା— ଶେଷକୁ ତାର ନାଁ ହେଲା 'ସ୍ୱେର ଦାସିଆ' । କେତେ ଥର ବର୍ତ୍ତିଗଲା, ଏ ବୃତ୍ତି ଛାଡ଼ିଦେବ, ପର ଜିନଷରେ ହାତ ଦେବ ନାହିଁ; କିନ୍ତୁ ପ୍ରତିଜ୍ଞା ରଖିପାରିଲା ନାହିଁ । ଚମକିଲା ପରି ଦେଖିଲା, କାହିଁ ହୀରାମଣି ତ ପାଖରେ ନାହିଁ, ତାଙ୍କ ବଖରା ଘର ତ ମାଟି ସଙ୍ଗରେ କୁଆଡ଼େ ମିଶିଯାଇଛି ।

ପ୍ରାଣର ସଙ୍ଗୀଳଗୁଡ଼ିକ ତ କୁଆଡ଼େ ଲୁଚିଯାଇଛନ୍ତି । ପାଗଳଙ୍କ ପରି ସେ ଦୁଇଥର ଥର ଦୁଇ ହାତକୁ ଦୁଇପାଖେ ଘାସଉପରେ ବୁଲାଇଦେଲା । ଘାସ ଛଡ଼ା ତା ହାତରେ ଆଉ କିଛି ବାଜିଲା ନାହିଁ । ହାତ ଟେକ ମୁହଁ ପାଖକୁ ନେଇ ଶୁଙ୍ଘିଲା, ହୀରାମଣିକି ସେ ହାତ ମୁଠାରେ ପାଇଛି କି ? ଆହା, ଧରା ନ ଦେଇ ସେ କୁଆଡ଼େ ପଳାଇଲା ? ବର୍ତ୍ତିଗଲା—ସେ,ତ ଏହି ବାଟେ କାଖରେ ପାଣିମାଠିଆ ଧରି ଫେରୁଥିଲା, ଏହି ବାଟେ ତ କେତେଥର ମୁଁ ତାକୁ ଜୋକିଛି । ତା'ର ପାଦର ଅଳତାରେ ତ ଏହି ବାଟ କେତେଥର ରଙ୍ଗ ହୋଇଛି · ସେ ଆଖି ମେଲେଇ ଗୁହିଁଲା—ଆଖିମୁଦି ଭାବିଲା; ମାତ୍ର ଭାବନାର କୂଳଥଳ ପାଇଲା ନାହିଁ ।

ତେବେ କ'ଣ ସ୍ୱେର ଦାସିଆର ଘରଟା ମେଲିଛଡ଼ ହେବା ସତ କଥା ? କେତେ ଲୋକ ସଙ୍ଗେ କେତେ ବିବାଦ କରିଥିଲା । କେତେ ଲୋକଙ୍କୁ କେତେ ଥର କଥା ଦୁଇ କରି କହିଥିଲା; ସେମାନେ କ'ଣ ଦାଉ ସାଧିଲେ ? ଏହି ଏକା ଭାବନା ତା'ର ମନକୁ ଅଧିକାର କରିବସିଲା—ଜେଲ ଯିବାକୁ ମାସେ ଥିଲା ମୁଁ ପଧାନ ଭାଇ ସଙ୍ଗେ କଳି ଲଗାଇଥିଲି, କିନ୍ତୁ ଫେର୍ ବରଷକ ତଳେ ତ ତା' ପୁଅକୁ ସୁଅମୁହଁରୁ ଉଦ୍ଧାର କରିଥିଲି । ଶ୍ରାବଣ ବଢ଼ିରେ ଶାଳଆର କୂଳବୁଡ଼ା ପାଣିସୁଅ ଭିତରେ ପଧାନପୁଅ ଭସିଯାଉଥିଲା, ସମସ୍ତେ ହଟିଗଲେ— ମାତ୍ର ସେତେବେଳେ ମୁଁ ଯେ ଅଣ୍ଡାଭିଡ଼ି ତାକୁ ଉଦ୍ଧାର କରିଥିଲି, ସେ କଥା କ'ଣ ପଧାନ ବୁଢ଼ା ଭୁଲିଗଲା ?

ଏହିପରି କେତେ କଥା ଦାସିଆ ମନକୁ ଛୁଇଁଲା; କିନ୍ତୁ କୌଣସିଟା ତାକୁ ସତ ବୋଲି ବୋଧ ହେଲା ନାହିଁ । ପୁଣି ସେ ଭାବିଲା— ଲୋକେ କହନ୍ତି, 'ଧର୍ମ ଅଧର୍ମ ଯୋଡ଼ିଏ କଥା, ପାପ-ପୁଣ୍ୟ ଯୋଡ଼ିଏ କଥା, ଭଲ-ମନ୍ଦ ଦୁଇଟା ବାଟ । ଅଧର୍ମ କଲେ, ପାପ କଲେ, ମନ୍ଦରେ ମାତିଲେ ସବୁ ଅହିତ ଆସି ଘଟେ ।'

ସ୍ୱେର କଲ, ଅଧର୍ମ ବୋଲି ଭାବିଲ ନାହିଁ । ଜେଲ ଗଲ, ତାକୁ ମୋ ପାପର ଫଳ ବୋଲି ଭାବିଲ ନାହିଁ । ଭଲ ବାଟରେ ନ ଯାଇ ମନ୍ଦ ବାଟରେ ପାଦ ଚାଳିଲି । ସେଥିପାଇଁ ଥରେ କାନ୍ଦିଲି ନାହିଁ ··ଅନୁତାପ କଲି ନାହିଁ । ତେଣୁ ବୋଧ ହୁଏ ପ୍ରଭୁ ମୋତେ ଏକାବେଳକେ କନ୍ଦାଇଦେବାପାଇଁ, ମୋର ସବୁଯାକ ପାପର ଏକାବେଳକେ ପ୍ରାୟଶ୍ଚିତ୍ତପାଇଁ, ମୋର ସୁଖର ସଂସାରକୁ ଛାରଖାର କରି ଏପରି ମାଟିଗୋଡା କରି ପକାଇଦେଲେ ? ତେବେ କଣ ଜଗନ୍ନାଥେ ମୋ'ପାଇଁ ତାଙ୍କର ସିଂହଦ୍ୱାର ବନ୍ଦ କରିଦେଇ ମୋ କୁଟୀର ଉଆସର ସିଂହଦ୍ୱାରକୁ ଚୂନା କରିଦେଲେ ? ମୋ ହୀରାମଣି ! ··· ·କାହିଁ ଗଲୁ ମୋର ହୀରାମଣି ? ପଦେ ହେଲେ ତାକୁ କହିପକାନ୍ତି, ଥରେ ହେଲେ ତାକୁ ବୁଝାଇ ଯାଆନ୍ତି; ଏତେ ପାପ କଲି ଯେ ଶେଷରେ ତାକୁ ହରେଇବାକୁ ପଡ଼ିଲା ! ବର୍ଷ ବର୍ଷ ଜେଲ ଛେଗି ବୁକୁକୁ ଜେଲ ଘରର ପଥରକାନ୍ଥ ପରି ଟାଣ କରିଦେଲି । ଏବେ ତାର ପ୍ରାୟଶ୍ଚିତ୍ତ ମିଳିଲା ! ସେଥିପାଇଁ କ'ଣ ଏ ମେଲା ଡଙ୍ଗରେ ବସି ଏପରି ଲୁହ ଢାଳିବାକୁ ବସିଥିଲି ? ଦାଗିଆ ଆଣ୍ଠୁ ଭିତରେ ମୁଣ୍ଡ ପୂରାଇଦେଇ କେତେ ସମୟ ବୁକୁକୁ ଚପିଧରିଲା । ଘନ ଘନ ନିଃଶ୍ୱାସ ଛାଡ଼ି ତଳେ ଭରଦେଇ ଉଠିବାକୁ ଚେଷ୍ଟା କଲା; କିନ୍ତୁ ତଳକୁ ତାର ହାତ ପାଇଲା ପରି ତାକୁ ଲାଗିଲା ନାହିଁ । ଓହୋ ! କେଡ଼େ ଗଭୀର ! ତା'ର ଆଖି ପାଇଲା ନାହିଁ, ଘୂରିଲେ ମୁଣ୍ଡ ବୁଲେଇଗଲା । ସେହିଠାରେ ପାପର ବିଭୀଷିକାରେ ସଂସାର ତାକୁ ଉପହାସ କଲା । ସେହି ଗଭୀର ରାଜ୍ୟ ଭିତରେ ଚିତ୍କାର ଶୁଭିଲା—"ଏ କି କଲ ! ଏ କି କଲ ! ରକ୍ଷା କର, ପ୍ରାୟଶ୍ଚିତ କର !" ସ୍ୱେର ଦାଗିଆ ସେ ସ୍ୱର ବାରିପାରିଲା । ସାତ ବର୍ଷ ତଳର ସେହି ନାରୀକଣ୍ଠର ମଧୁର ମୂର୍ଚ୍ଛନା ଶୁଣି ସେ ମୂର୍ଚ୍ଛିତ ହୋଇଗଲା । ତା ଉପରେ ଅନନ୍ତ ଆକାଶ, ତା ତଳେ ଅତଳ ସାଗର—ସେ ଯାଏ କୁଆଡ଼େ ? ମୃତ୍ୟୁଭୟରେ ତା'ର ଦେହ କମ୍ପିଲା । ବୈଶାଖ ମାସର ଉଦୁଉଦିଆ ଖରାବେଳର ମରୀଚିକା ପରି ସମଗ୍ର ସଂସାରରେ ତା'ର ପାପର ରୂପ ଭାସିଲାପରି ଜଣାପଡ଼ିଲା । ଭାବିଲା—ମନୁଷ୍ୟର ରାଜ୍ୟରେ କି ଏପରି ଘଟେ ? ପ୍ରଭୁ ଜଗନ୍ନାଥେ କି ଏପରି ଘଟାନ୍ତି ? ଏ ମୋର ପାପର ବିଭୀଷିକା—ଏ ମୋର ପାପର ଫଳ । ଦେଖୁଛି, ମୋରିପାଇଁ ଏ ଅତଳ ପାତାଳ ଖୋଲା ହୋଇଛି—ଏ ପାଖରେ ଗାଁ ର ସାମଲ, ଦାସ, ଜେନା, ବରାଳ ଘର ସବୁ ମୁଣ୍ଡ ଟେକି ଠିଆ ହୋଇଛନ୍ତି । କେହି ତ ମୋତେ ଟାଣି ନେଉ ନାହାନ୍ତି । କେହି ତ ମୋ ହୀରାମଣିକି ଅଶ୍ରା ଦେଇପାରିଲେ ନାହିଁ । ଏ ପାପର ପ୍ରାୟଶ୍ଚିତ୍ତ ନ କଲେ କ'ଣ ଆଜି ମୋର ମେଲା ଡଙ୍ଗରେ ଘର ହେବ, ହଜିବା ହୀରାମଣି ଫେରିଆସିବ !···ନା,

ନା, ଆଉ ଜୀବନରେ କିଛି ଲାଭ ନାହିଁ—ଡେଇଁପଡ଼େ ଏ ପାତାଳ ଗର୍ଭକୁ । ଏଇଠି ମୋର ସବୁ ବନ୍ଧ-ବନ୍ଧନ, ପାପ-ପୁଣ୍ୟ, ଧର୍ମ-ଅଧର୍ମର ବିଚାର ହେଉ । ଏହା କହି ସେ ଘୂମ୍‌କିନା ଡେଇଁପଡ଼ିଲା । ଦେଖିଲା, ସେ ଚାରିପଟେ ପଥରକାନ୍ଥ-ବନ୍ଧା ଏକ ଘରେ ପଡ଼ିଛି । ଚେତା ଆସିଲା । ଚାରିଆଡ଼କୁ ହାତ ମାରିଲା । ସେ ଅନ୍ଧାର ଭିତରେ କାନ୍ଥ ବାଉଳିଲା, ଏକ ଦିଗରୁ କ୍ଷୀଣ ସ୍ରୋତରେ ପବନ ଟିକିଏ ବହିଆସୁଥିଲା । ସେ ଧୀରେ ଧୀରେ ଯାଇ ସେଠି ଠିଆହେଲା । ସେଠି ଲୁହାର ଶାବଳରେ ଦୁଆର ଟାଣ । ତେଣେ ଅଳ୍ପ ଦୂରରେ ଶୁଭିଲା—"ଏକ୍, ଦୋ, ତିନ୍ ।"

ଶେଖର ଦାଗିଆ ଚମକିପଡ଼ିଲା । ବୁକୁରେ ହାତ ମାରିଲା, ବୁକୁରେ ତାହାର ଦାଗୀପଟା ଓହଳା ହୋଇଛି । ଜାଣିଲା ସେ ପୁରୀ ଜେଲର ୧୩୨୫ ନମ୍ବର ଦାଗୀ । ମନେପଡ଼ିଲା, ସନ୍ଧ୍ୟା ନ ହେଉଣୁ ସେ ଘର କଥା ବିଚାରି, ସ୍ନେହର ପିଲାଗୁଡ଼ିକଙ୍କ ମୁହଁ ମନେ ପକାଇ ଜେଲର ନିର୍ଜନ ଗୁହା ଭିତରେ ଆଣ୍ଠୁ ଭିତରେ ମୁଣ୍ଡ ପୂରାଇ ଭାବୁଥିଲା ସାତବର୍ଷ କେବେ ପୂରିବ—ସେ କିପରି ଯାଇ ଘରେ ପହଞ୍ଚିବ, କିଏ କିଏ ତାକୁ କିପରିଭାବରେ ଦେଖିବେ । ହତାଶଭାବରେ ସେ ଜେଲର ଲୁହା କବାଟକୁ ଆଉଜି ବସିପଡ଼ିଲା । ଗଣିଲା—ଆହୁରି ଛ' ବର୍ଷ ଦଶ ମାସ ବାକି !

● ❀ ●

# ଶେଷ ଭକ୍ତ

କାର୍ତ୍ତିକ ପୂର୍ଣ୍ଣିମା ଯାତ୍ରା.........

ଚଣ୍ଡେଶ୍ୱର ବେଢ଼ାରେ ଲୋକସମାଗମର ସୀମା ନାହିଁ ।

କେତେ ଯୁଗର ସ୍ମୃତି ପରମ୍ପରା ଧରି ସେ ଯାତ୍ରା ଚାଲିଆସିଛି । ସେ ଅଞ୍ଚଳର ମାନବ କଳ୍ପନାର ସୀମା ପାର ହୋଇ ଯେଉଁଦିନ ସେ ମନ୍ଦିର ଗଗନକୁ ମୁଣ୍ଡଟେକି ଉଠିଲା, ସେହି ଅଜ୍ଞାତ ଦିବସରୁ ଏ ଯାତ୍ରା ଚାଲିଆସିଛି ବୋଲି ଜନଶ୍ରୁତି ।

ସବୁ ବର୍ଷପରି ଏ ବର୍ଷ ମଧ୍ୟ ଜାକଜମକରେ ଯାତ୍ରା ଆରମ୍ଭ ହେଲା । ସବୁ ବର୍ଷପରି ଏ ବର୍ଷ ମଧ୍ୟ କଳା-ନାଲି-ବସନପରିହିତା ପଲ୍ଲୀ ରମଣୀର ଝାଙ୍ଗୁଡ଼ି ପାହୁଡ଼ଲଗା ପଦଶବ୍ଦରେ ମନ୍ଦିର ପ୍ରାଙ୍ଗଣ ଥରିଉଠିଲା । ସବୁ ବର୍ଷପରି ବଣ୍ଟିଆଖୋସା, ମଠାପିନ୍ଧା, ପଲ୍ଲୀବାସୀର ପାନଖିଲାଭରା ମୁଖର କଳରୋଳରେ ଗ୍ରାମ ଦିଲ୍ ପୂରିଉଠିଲା । ବିକୃତ ବଙ୍ଗଳାମିଶା ଓଡ଼ିଆ କୀର୍ତ୍ତନର ତାନ ପୃଥିବୀ ଗଗନକୁ ସଚକିତ କରିଦେଲା । ସବୁବର୍ଷପରି ନାଟତାମସା, ଦୋକାନପଟ୍ଟ, ବିକାକିଣା, ଦେବଦର୍ଶନ, ମାଳୀ ପଣ୍ଡାଙ୍କ ଟଣାଓଟରା ସବୁ ଏକାପରି ଚାଲିଲା ।

ଏହିସମୟରେ ତୀର୍ଥକ୍ଷେତ୍ରର ଅତି ଅଳ୍ପ ଦୂରରେ ପାହପଡ଼ାର ଏକ କ୍ଷୁଦ୍ର କୁଟୀର ଭିତରେ ଯାତ୍ରାର ପୂର୍ବଦିନ ଏକ ରକ୍ତାରକ୍ତି ଘଟଣା ଘଟିଗଲା ।

ଘଟଣାଟା ସଂସାରରେ ନୂଆ ନୁହେଁ, ସବୁବେଳେ ଘଟେ । କେବଳ ଘଟି ନ ଥିଲା ଥରେ, ତ୍ରେତା ଯୁଗରେ ରାମଚନ୍ଦ୍ରଙ୍କ ଅମଳରେ । ସେତେବେଳେ ରାମଚନ୍ଦ୍ର ରାଜ୍ୟ ଛାଡ଼ି ବଣରେ ପଶିଲେ ସିନା, ଟେଙ୍ଗା ଧରି ଭାଇର ମୁଣ୍ଡ ଫଟାଇ ଭାଇଭାଗ ବାଣ୍ଟିବାକୁ ଚେଷ୍ଟା କରି ନ ଥିଲେ ।

ତେଣୁ ପାହପଡ଼ାର ଘଟଣା ବେଶୀ କିଛି ଗୁରୁତର ଧରଣର ନୁହେଁ । ଭାଇଭାଗପାଇଁ ତାହା ଏକ କ୍ଷୁଦ୍ର ଗଣ୍ଡଗୋଳ—ସେ ଭିତରେ କରୁଣ ଚିତ୍କାର,

ସେ ଭିତରେ ସାନଭାଇର କ୍ରୋଧମିଶ୍ରିତ ଅସହ୍ୟ ବାକ୍ୟବାଣସମ୍ବଳିତ ବାହୁଯୁକ୍ତ ଠେଙ୍ଗାଘାତରେ ବଡ଼ଭାଇ ମୁଣ୍ଡରୁ ରକ୍ତପାତ । ଏତିକି ମାତ୍ର ଅଭିନୟ ।

ଲୋକେ—ମଫସଲ ଲୋକେ ନିତ୍ୟନୈମିତ୍ତିକଭାବରେ ଏ ଦୃଶ୍ୟ ଦ୍ୱାପର ଯୁଗର କୁରୁକ୍ଷେତ୍ର ପଡ଼ିଆଠାରୁ ଆରମ୍ଭ କରି ନିଜ ନିଜ ଘରପର୍ଯ୍ୟନ୍ତ ଦେଖିଆସୁଥିଲେ ସୁଦ୍ଧା ପାଖପଡ଼ାର ଏ ରକ୍ତପାତ ସମ୍ବାଦ ପାଇ ଜିଭ କାମୁଡ଼ି, କାନରେ ହାତ ଦେଇ ଅଚ୍ୟୁତାନନ୍ଦଙ୍କ ମାଳିକା ଗାଇଲାପରି କହିଲେ—"କଳି ଶେଷ ହେଲା । ଭାଇକି ଭାଇ ଚହ୍ନିଲା ନାହିଁ···ଆଉ ଧର୍ମ ନାହିଁ···ନାହିଁ ··"

ଧର୍ମ ଅଛି କି ନାହିଁ ସେକଥା ସାନଭାଇ ଗୋପିଆ ବୁଝିଲା ନାହିଁ । ବଡ଼ଭାଇର ଭାଗ ପାଇବାର ଅଧିକାର ଅଛି କି ନାହିଁ, ଆଉ ସେଥି ସମ୍ପର୍କରେ ଦରକାର ହେଲେ ତା'ର ଲଢ଼ିବାକୁ ବଳ ଅଛି କି ନାହିଁ ସେ ଦେଖିନେଲା । ତା ଫଳରେ ବଡ଼ଭାଇ ରଘୁଆର ରକ୍ତପାତ !

ଘରେ ଏ କୁରୁକ୍ଷେତ୍ର ଯୁଦ୍ଧପାଇଁ କିଛି ନ ଥିଲା । ଦୁଇ ବଖରା ଘର, ଦୁଇଟି ବଳଦ, ଦୁ'ଖଣ୍ଡି ପଚିଶ ଟଙ୍କାର କରଜ ତମସୁକ ଓ ପେଟକୁ ମୁଠାଏ ପିଠିକି ଖଣ୍ଡେ ଦେଇ ପୋଷିବାପାଇଁ ବୁଢ଼ୀ ମାଆଟିଏ !

ସନ୍ଧ୍ୟାବେଳେ ଏ ଗଣ୍ଡଗୋଳ । ରାତି ପାହିଲେ ଚନ୍ଦ୍ରେଶ୍ୱର ବେଢାରେ ଯାତ୍ରା । ଗୋପିଆକୁ ସେ ରାତିରେ ଆଉ କେହି ଦେଖିଲେ ନାହିଁ ।

ଯାହାର ମୁଣ୍ଡ ଫାଟିଲା ସେ ରହିଲା ଘରେ; ଆଉ ଯେ ମୁଣ୍ଡ ଫଟେଇଲା ସେ ସୁସ୍ଥ ଶରୀରରେ କୁଆଡ଼େ ଗଲା କେହି ଜାଣିଲେ ନାହିଁ । ମାତ୍ର ବୁଢ଼ୀ ମାଆ କାନ୍ଦିଲା ତାହାରିପାଇଁ । କହିଲା—"ରଘୁଆ, ତୁ କି ଏଡ଼କି ନିର୍ଦ୍ଦୟ ହେଲୁ ? ଗୋପିଆ ମୋର ଏ ରାତିରେ ଗଲା କୁଆଡ଼େ ?"

ଗାଁରେ ଏହିପରି ଘଟେ । ରଘୁଆ କିଛି ନୂଆ କଥା ଶୁଣିଲା ନାହିଁ ।

ମୁଣ୍ଡରେ ପୋଡ଼ାକନା କିଛି ଭରିତ କରିଦେଇ ଭାଇକି ଖୋଜିବାପାଇଁ ବାହାରି ପଡ଼ିଲା । ଏଣେ ଘରେ ମା' ବୁଢ଼ୀଟି ବର୍ଷା ରାତିରେ ବୁଢ଼ୀ ମାଙ୍କଡ଼ୀ ଡାଳକୁ ଧରି ବସିଲା ପରି ଦାଣ୍ଡଦୁଆରେ ଗୋପିଆ ଅପେକ୍ଷାରେ ବସିରହିଲା ।

ରକ୍ତପାତପରେ ରଘୁଆର ଅଶ୍ରୁପାତ ମଧ୍ୟ ହେଲା । ଯେତିକି ସେ ରାତିରେ ଭାଇକି ଖୋଜିବୁଲିଲା ସେତିକି ଭାଇଭାଗ କଥା ଭୁଲି ଭାଇଦର୍ଶନପାଇଁ ବ୍ୟାକୁଳ ହୋଇଉଠିଲା । ଦେବଦର୍ଶନ କଥା ସେ ମନରେ ସ୍ଥାନ ଦେଲା ନାହିଁ ।

ବାହୁବଳରେ ବଳୀୟାନ୍ ଗୋପିଆ ବେପରୁଆବାଲା । ଅନ୍ଧାର ରାତିରେ ଝଣ୍ଡେଶ୍ୱର ଗଳିପର୍ଯ୍ୟନ୍ତ ତା ବୁକୁ ଭିତରେ ରାଗ ଶିଖା ଟେକି ଉଠିଥିଲା । ରାତିର ଉଦାରତା, ଗଗନର ବିସ୍ତୀର୍ଣ୍ଣତା ଓ ଜ୍ୟୋତ୍ସ୍ନାର ନିବିଡ଼ତା ଦେଖି ତା'ର ହୃଦୟର ଉତ୍ତେଜନା ଶାନ୍ତ ହୋଇଆସିଲା । .

ତା'ପରେ ଘରକଥା ଭାବିଲା । କ୍ରମେ ଭାଇ ମୁଣ୍ଡକଥା ମନେ ପକାଇଲା ।

ଶେଷରେ ମୁହଁ ପାଖକୁ ହାତପାପୁଲି ନେଇ ନିରୀକ୍ଷଣ କରି ଦେଖିଲା, ସେଥିରେ କିଛି ଚିହ୍ନବର୍ଣ୍ଣ ଅଛି କି ନାହିଁ ।

"ତେବେ କ'ଣ ରକ୍ତ···!"

ଠେଙ୍ଗାଧରାର କି ଏକ କଠୋରତା ହାତ ସଙ୍ଗେ ବା ଲିପିରହିଥିଲା ! ଭାବି ଭାବି ସେ ବୁଲିଲା ।

ଯାତ୍ରା ଗହଳରେ ଗୋପିଆ କେତେ ମୁହଁ ଦେଖିଲା । କିଏ କେତେ କଥା ପଚାରିଲେ; ସେ କିନ୍ତୁ କାହା କଥାରେ କିଛି ଜବାବ ଦେଲା ନାହିଁ ।

କେତେ ବୁଲିବ ! ଘରଟାକୁ କନ୍ଦାଇ ଆସିଛି, ଭାଇ ମୁଣ୍ଡରୁ ରକ୍ତ ବୁହାଇ ଆସିଛି, ସେ ସତରେ କାନ୍ଦିବାଠାରୁ ବେଶୀ କାନ୍ଦ-କାନ୍ଦ ହେଲା ।

ସକାଳ ଟଳିଲା । ସୂର୍ଯ୍ୟ ମୁଣ୍ଡ ଉପରେ ହେଲା । କ୍ରମେ ଜନସ୍ରୋତ ଯାତ୍ରାର ବିପରୀତ ମୁଖରେ ବୁଲିଲା । ଦୋକାନପଣ କ୍ରମେ କମିଆସିଲା । ଜନକୋଳାହଳ କ୍ରମେ ସନ୍ଧ୍ୟାବେଳର ପକ୍ଷୀ କୋଳାହଳ ଶାନ୍ତ ହେଲା ପରି ଶାନ୍ତ ହୋଇଆସିଲା । ନାମଯୁଗ କୀର୍ତ୍ତନର ନିରଳସ କରତାଳମାତ୍ର ଆଦୌ ଶୁଭିଲା ନାହିଁ । ଏପରି ଅବସ୍ଥାରେ ଗୋପିଆ କରେ କଣ ?

ଦେବଦର୍ଶନ ?

ସେ ଇଚ୍ଛା ତା'ର ନାହିଁ । ଘରକୁ ଫେରିଯିବାକୁ ମଧ୍ୟ ତା'ର ଇଚ୍ଛା ହେଲା ନାହିଁ । ଏଣେତେଣେ ଆଖି ବୁଲାଇଲା । ଅଠରଦିନ ଯୁଦ୍ଧପରେ କୁରୁକ୍ଷେତ୍ର ଯେପରି ଶ୍ରୀହୀନ ହୋଇଥିଲା, ଚବିଶ ଘଣ୍ଟା ଯାତ୍ରା ଶେଷରେ ମନ୍ଦିର ପ୍ରାନ୍ତର ସେହିପରି ହତଶ୍ରୀ ହୋଇପଡ଼ିଥିଲା । କେବଳ ଯୁଦ୍ଧପଡ଼ିଆରେ ଶୃଗାଳ, କୁକୁର ବୁଲିଲା ପରି କେତେଜଣ ପଣ୍ଡା ସେବକ ସାଥୀଛଡ଼ା ଭକ୍ତଙ୍କ ପଛେ ପଛେ, ଶେଷ ଶିକାର ଖୋଜି ବୁଲୁଥିଲେ ।

ଏତେବେଳକେ ଗୋପିଆର ଆଖିପଡ଼ିଲା ତା'ର ଭାଇ ଉପରେ । ସେ ହଠାତ୍ ଚମକି ଠିଆହେଲା ।

ଏ କ'ଣ ? ଭାଇ ହାତରେ ଠେଙ୍ଗା ! ଏହା ଦେଖି ଦୁର୍ବାର କ୍ରୋଧ ଧୀରେ ଧୀରେ ତା ହୃଦୟରେ ମୁଣ୍ଡ ଟେକିଲା । ଚାରିଆଡ଼କୁ ଚାହିଁଲା । ଠେଙ୍ଗା ଆଖିରେ ପଡ଼ିଲା ନାହିଁ । ହାତକୁ ମୁଠା କରି, ବାହୁରେ ବଳ ସଞ୍ଚୟ କରି ସେ ଜାଗ୍ରତ ହେଲା ।

ରଘୁଆର କିନ୍ତୁ କୌଣସି ଆଡ଼େ ଦୃଷ୍ଟି ନାହିଁ । ସିଧା ସିଧା ସେ ଦେଉଳମୁହାଁ ଚାଲିଲା । ଦୁଆରେ ଠେଙ୍ଗାଟା ଥୋଇ ଦେଇ ସେ ଭିତରେ ପଶୁ ନ ପଶୁଣୁ ପଛେ ପଛେ ଦି ଚାରିଜଣ ପଣ୍ଡା, ମାଳୀ; ତାଙ୍କ ପଛେ ପଛେ ଉଗ୍ରମୂର୍ତ୍ତି ଗୋପିଆ ।

ଗମ୍ଭୀରର ସେହି ଜମାଟବନ୍ଧା ଅନ୍ଧକାର ଭିତରେ ରଘୁଆ ଆର୍ଦ୍ର କଣ୍ଠରେ କହିଉଠିଲା—

"ପ୍ରଭୁ ହେ, ଅଗତିର ଗତି··· ।"

ଏହି ସ୍ୱରରେ ଗୋପିଅର ସକଳ କ୍ରୋଧ ଉତ୍ତେଜନା ଅପସାରିତ ହୋଇଗଲା । ଦୁଆରୁ ରଘୁଆର ଠେଙ୍ଗାଟା ଆଣି ପଛରେ ଛକି ଠିଆହୋଇଥିଲା । ମତଲବ ଥିଲା ଅନ୍ୟ ପ୍ରକାର···ଆଉ ଏକ ରକ୍ତପାତର କଳ୍ପନା ମନରେ ଖେଳୁଥିଲା !

ସେହିପରି ଯୋଡ଼ହାତ ହୋଇ ଦେବଦର୍ଶନ ପରେ ରଘୁଆ ବୁଲିପଡ଼ି ଦେଖେ ତ ଆଗରେ ଗୋପିଆ ··

କି କାରଣରୁ ଗୋପିଆ ହାତରୁ ଠେଙ୍ଗାଟା ଖସିପଡ଼ିଲା । ପୀଠ ପାଖରେ ଏହି ଶେଷ ଭକ୍ତ ଦୁହିଁଙ୍କୁ ମାଳୀ, ପଣ୍ଡା ହେଉଥିବା ଡାକୁଥିଲେ—"ପ୍ରଭୁ ଚଣ୍ଡେଶ୍ୱର, ମଙ୍ଗଳ କରନ୍ତୁ ·· ।" ସକଳ ମାନ-ଅଭିମାନ, କ୍ରୋଧ, ଉତ୍ତେଜନା ଭେଦ କରି ବଳବାନ୍ ଗୋପିଆ ମୁହଁରୁ ବାହାରିପଡ଼ିଲା —"ଭାଇ !"

ମୂକ ଦେବତାପରି ଭାଇ ଖାଲି ଆଖିରେ ଚାହିଁ ରହିଲା । ପୋଡ଼ାକନାମିଶା ରକ୍ତଧାରର ଚିହ୍ନ ତା' ମୁଣ୍ଡରେ ବେଶ୍ ବାରିହେଉଥିଲା । ସେ କେବଳ ଗୋପିଆର ହାତଆଡ଼କୁ ହାତ ବଢ଼ାଇ ଆଣିଲା ।

● ● ●

# ଗୋଟିଏ ଚିଠି

ଫାଲ୍‌ଗୁନ ମାସରେ ଏକ ସନ୍ଧ୍ୟାବେଳେ ଛତ୍ରପୁର ସହରର ଏକ ଛୋଟିଆ ଘରେ ସୁରମା ସହିତ ମାଳତୀର ଆଳାପ ଚାଲିଲା ।

ସୁରମା ଯୁବତୀ । ବୟସ କୋଡ଼ିଏ ବାଇଶି ଭିତରେ । ତା'ର ଆଖି ଦୁଇଟାର ଚାହାଣି ଖୁବ୍ ପରିଷ୍କାର; ମାତ୍ର ତା' ଭିତରେ ଜୀବନର କିଛି ଘାତ-ପ୍ରତିଘାତର ଛାୟା ଲୁଚିରହିଲାପରି ଜଣାପଡ଼ୁଥାଏ । ହସଟା ତା'ର ଖୁବ୍ ଢଳଢଳ; କିନ୍ତୁ ସେହି ହସ ତଳେ କୌଣସି ନିରାନନ୍ଦ ସ୍ୱପ୍ନଛାୟା ଲୁଚିରହିଥିଲା ପରି ଆଭାସ ମିଳୁଥାଏ । ସୁରମାକୁ ସମସ୍ତେ ସୁରମା ବୋଲି ଡାକନ୍ତି ନାହିଁ; ଡାକନ୍ତି ବାୟାଣୀ ବୋଲି । କାରଣ ସେ ନାହୁଁ ଆସି ସେହି ଘରେ ଦାସୀବୃତ୍ତି କରିବାର ମାସକମଧ୍ୟରେ ତା'ର ବାୟାଣୀପଣିଆ ବେଶ୍ ପ୍ରକାଶପାଇଥିଲା । ସେ କହେ, ତା'ର ଘର କାହିଁ ଯାଇ ଖଲିକୋଟର କେଉଁ ଅଜଣା ମଫସଲ ଭିତରେ । ସେ କହେ, ତା'ର ବାପମା'ଙ୍କ ମୁହଁ ସେ କେବେ ହେଲେ ଦେଖି ନାହିଁ । ସାତ ବର୍ଷତଳେ ବିଭା ହୋଇଥିଲା ଘୁମୁସର ବାଦପୁର ଗାଁରେ । ଆଠବର୍ଷ ନ ପୂରୁଣୁ ବିଧବା ହୋଇ ଏପରି ଦାସୀବୃତ୍ତି କରିବାକୁ ବାଧ୍ୟ ହେଲା ।

ସୁରମା ସବୁବେଳେ ଭଲଥାଏ; ମାତ୍ର କାହାର ବିଭାଘର କଥା ପଡ଼ିଲେ ତା'ର ମୁହଁ କାହିଁକି କଳାପଡ଼ିଯାଏ, ଓଠ ଦୁଇଟା କାହିଁକି ଥରେ । ସେହି ଥରଥର ଓଠତଳେ ସେ ମନଇଚ୍ଛା କ'ଣ ଗୁଡ଼ାଏ କହିଯାଏ ।

ଏହାଛଡ଼ା ସେ ଆଉ କିଛି ପାଗଳାମି ଦେଖାଏ ନାହିଁ । ଅନ୍ୟ ସମୟରେ ସେ ବୁଦ୍ଧିମତୀ, ଗୁଣବତୀ, ରୂପବତୀ ଇତ୍ୟାଦି ଇତ୍ୟାଦି ।

ମାଳତୀ ଘରର ବଡ଼ଝିଅ ।

ଫାଲ୍‌ଗୁନ ମାସର ଯେଉଁ ସନ୍ଧ୍ୟାବେଳ କଥା କୁହାଯାଉଛି, ସେଦିନକୁ ମାଳତୀର ବିବାହ ବାକି ଥାଏ ଦୁଇଦିନ । ମାଳତୀ ତା'ର ଜୀବନର ଏକ ଘାଟ

ପାର ହୋଇ ଆଉ ଏକ ଘାଟକୁ ଯିବାଲାଗି ସମସ୍ତେ ଆୟୋଜନ ଲଗାଇଥାନ୍ତି । ସେସବୁ ଆୟୋଜନ ଦେଖି ଲଜ୍ଜାରେ ମାଳତୀର ମୁହଁ କେବେ ରଙ୍ଗା ପଡ଼ିଯାଏ, କେବେ ଅବା ମନଭିତର ହସ ଥରିଉଠେ । ଯାହିରୁ କେତେବେଳେ ହେଲେ ତା'ର ପରିଷ୍କାର କଥା ବାହାରେ ନାହିଁ । କାହାକୁ ଚାହିଁଲେ ନ ଚାହିଁଲାପରି ଜଣାପଡ଼େ; ନ ଚାହିଁଲେ ମଧ୍ୟ ଚାହିଁଲାପରି ଦିଶେ । ସେ ମନରେ ହସେ ଆଖିରେ ମଧ୍ୟ ହସେ । କେତେବେଳେ ସେ କାନ୍ଦେ; ମାତ୍ର ସେହି କ୍ରନ୍ଦନରୋଳ ସଙ୍ଗେ ତା' ଜୀବନର କୌଣସି ଏକ ସ୍ପଷ୍ଟ ତନ୍ତ୍ରୀ ବାଜିଉଠି କାନ୍ଦଟାକୁ ରସମୟ କରିଦିଏ ।

ମାଳତୀର ଏପରି ମାନସିକ ଅବସ୍ଥାବେଳେ ଫାଲ୍‌ଗୁନ ସନ୍ଧ୍ୟାର ଧୂସର ଛାୟା ଭିତରେ ସୁରମା ଅଭିମାନିନୀ ପରି ଘରକୋଣରେ ବସି କ'ଣ ଭାବୁଥିଲା । ପରିଣୀତା ମାଳତୀ ତା'ର ଡାହାଣ ହାତଟାକୁ ନିଜ ହାତରେ ଧରି ତା' ମୁହଁକୁ ଚାହିଁରହିଥିଲା ! ମାଳତୀ ଭାବୁଥିଲା, ସୁରମାର ଦୁଃଖମୟ ଜୀବନର କଥା, ସୁରମା ଭାବୁଥିଲା ତା' ନିଜ ଜୀବନସହିତ ମାଳତୀ ଜୀବନର ସମ୍ପର୍କ କଥା ।

ମାଳତୀ ପ୍ରଥମେ ନୀରବତା ଭାଙ୍ଗି ପଚାରିଲା—"କହ ସୁରମା, ତୋ'ର ଏପରି ବୁଦ୍ଧି ହେଲାପରେ ତୁ ଯେବେ ବଡ଼ ହୋଇଥାନ୍ତୁ ତାହା ହେଲେ ବାହାବେଳେ କ'ଣ ଭାବିଥାନ୍ତୁ ?"

ନିଜ ହାତକୁ ଟିକିଏ ହଲେଇଦେଇ ସୁରମା ମୁହଁ ଟେକି ଅଳପ ହସିଦେଲା । ମାଳତୀ ପୁଣି ପଚାରିଲା—"କହ, ସୁରମା କହ, ତୁ ମନକୁ ବର ବାଛୁଥିଲେ କମିତି ବର ବଛା ହୋଇଥାନ୍ତୁ ?"

ସୁରମାର ଅଧରପ୍ରାନ୍ତ ଥରିଗଲା । ସେ ପ୍ରକାଶ୍ୟରେ ଚେଷ୍ଟା କରି ହୃଦୟ ଭିତରର କୋହଟାକୁ ସମ୍ଭାଳିନେଲା । କପାଳରେ ପଡ଼ିଥିବା ବାଳକେରାକ ସଜାଡ଼ିବାକୁ ବାହାନା ଦେଖାଇ, ଆଖିକୋଣରେ ଦି ଟୋପା ଲୁହ ପୋଛିପକାଇ ସେ କହିଲା—"କମିତି ବର ବଛା ହୋଇଥାନ୍ତି, ଶୁଣିବାକୁ ମନ ହେଉଛି ?"

ମାଳତୀ ମନରେ ଭୟ ଓ ଆଗ୍ରହ ଜାଗିଉଠିଲା । ଭାବିଲା, ବାୟାଣୀ ସୁରମା କ'ଣ କହି ବସିଉଠିବ ପରା !

ସୁରମା କହିଲା—"ମୁଁ ବର ବାଛୁଥିଲେ କ'ଣ ଇମିତି ବର ବଛା ହୋଇଥାନ୍ତି କି ଗୋ ? ମୋ ମନଗଢ଼ା ବର ମୁଁ ବାଛିନେଇଥାନ୍ତି । ବୟସ

ତାଙ୍କର ହୋଇଥାନ୍ତା କୋଡ଼ିଏ ବାଇଶି । ତାଙ୍କର ରୂପ କପରି ହୋଇଥାନ୍ତା କହିବି ? ଶାଳଗଛଟା ପରି ସେ ବଢ଼ିଯାଇଥାନ୍ତେ । ପୂନେଇଁ ଜହ୍ନପରି ମୁହଁ ଝଟକି ଦିଶୁଥାନ୍ତା । ବଳଦେଇଲାପରି ବାହା, ମୁଠୁଣିଏ ଓସାର ବୁକୁ,—ଯେ ଦେଖନ୍ତି ଜକ୍‌ଜକ୍ ହୋଇ ଶୋଭା ଫୁଟିପଡ଼ୁଥାନ୍ତା ।”

ମାଳତୀ ପିଇଲାପରି କଥାକୁ ଶୁଣୁଥିଲା । ସୁରମା ଟିକିଏ ନିଃଶ୍ୱାସ ଛାଡ଼ି ପୁଣି ଆରମ୍ଭ କଲା—

“ଏଇପରି ବରଟିଏ ମୁଁ ବାଛିନେଇଥାନ୍ତି ଗୋ ମାଳତୀ ! କେତେ କଥା ଭାବୁଥାନ୍ତି—କମିତି ରହିବୁ, କମିତି କାଳ କାଟିବୁ, କମିତି ସେ ମୋତେ ଆଦର କରିବେ । ସେ କ’ଣ ମୋତେ ଆଦର କରନ୍ତେ ନାହିଁ ? ମୁଁ ତ ତାଙ୍କୁ ପ୍ରେମରେ କିଣିପକାନ୍ତି ।”

ଏକ ଦୀର୍ଘନିଃଶ୍ୱାସ ଛାଡ଼ି ସୁରମା ପୁଣି କହିଲା—

“ଆଉ ଏଇ ଯେଉଁ ବର କଥା କହିଲି, ଶୁଣ ମାଳତୀ, ମତେ ସେ ପାଖରେ ଧରି କେତେ ସୁଆଗରେ କଥା କହୁଥାନ୍ତେ । ମୁଁ ତାଙ୍କୁ ହସି ହସି କହୁଥାନ୍ତି—ଯିବ ଯେବେ କୁଆଡ଼େ ମତେ ସାଙ୍ଗରେ ନିଅ ।”

ପିଲା କଥା କହି ସୁରମା ଚମକିପଡ଼ିଲା କହିଲା—“ଆମ ଭିତରେ କ’ଣ କଳି ଲାଗନ୍ତା ନାହିଁ ? କଳି ଲାଗନ୍ତା; ମାତ୍ର ମତେ ସେ ରାଗି କରି କହିଲେ ମୁଁ ତାଙ୍କୁ ହସି କରି କହନ୍ତି । ସେତେବେଳେ ତାଙ୍କ ରାଗ କୁଆଡ଼େ ଉଭେଇଯାନ୍ତା । ଇମିତି କେତେଦିନ ଯାନ୍ତା । ଧର, ମାସେ, ଦି’ ମାସେ, ଛ’ ମାସ, ବର୍ଷେ ଯାନ୍ତା । ତା’ପରେ କ’ଣ ହୁଅନ୍ତା ?”

ସୁରମା କ୍ଷଣେ ରହି କହିଲା--“ତା’ପରେ ଧର, ଆମର ଯେବେ ଅଭାବ ପଡ଼ନ୍ତା, କ୍ଷେତ ମରୁଡ଼ି ହୁଅନ୍ତା, ଆମକୁ କରଜ ନ ମିଳନ୍ତା, ଘରେ ପଇସାପତ୍ର ନିଅଣ୍ଟ ହୁଅନ୍ତା, ମୁଁ କି ସେତେବେଳେ ମୋର ଅଳଙ୍କାରପତ୍ର ଲଗାଇ ବେଶ ହୁଅନ୍ତି । ଗୋଟି ଗୋଟି କରି ସ୍ୱାମୀଙ୍କ ହାତକୁ ବଢ଼ାଇ ଦିଅନ୍ତି । ସେ ତ କେଉଁ ତାହା ନିଅନ୍ତେ ନାହିଁ । ତା’ପରେ ମୁଁ ବହୁତ ବିନୟରେ କହି ସେତକ ତାଙ୍କ କାନିରେ ବାନ୍ଧି ଦିଅନ୍ତି । ସେ ଆଖି ଛଳଛଳ କରି ବଜାରକୁ ଯାନ୍ତେ । ସନ୍ଧ୍ୟା-ବେଳକୁ ମୁହଁକୁ ଶୁଖାଇ ଟଙ୍କା ଧରି ଘରକୁ ଫେରନ୍ତେ ।”

ଏ ଗଳ୍ପ ଶୁଣି ମାଳତୀ ପ୍ରଶ୍ନ ପଚାରିବାକୁ ସାହସ କଲା ନାହିଁ । ସୁରମା ଟିକିଏ ଅନ୍ୟ କଥା ଭାବିଲାପରି ରହି ପୁଣି ଆରମ୍ଭ କଲା—

"ତା'ପରେ ଆମର କଥା ପଡ଼ନ୍ତା କେମିତି ଚଳିବା । ସ୍ୱାମୀ ସେତେବେଳେ ଯେବେ କହନ୍ତେ କଲିକତା, ରେଙ୍ଗୁନ ଯିବାକୁ, ମୁଁ ଭେ-ଭେ କରି କାନ୍ଦିପକାନ୍ତି ।"

ସୁରମା ଆଖିରେ ଲୁହ ଛଳଛଳ ଦେଖାଗଲା । କହିଲା—

"ଯେବେ ସେ ମୋ କଥା ନ ମାନି ରେଙ୍ଗୁନ ଯାନ୍ତେ, ମୁଁ ସେଇଠାରେ ସେହି କୁଡ଼ିଆ ଘରେ ତାଙ୍କ ବାଟ ଚାହିଁ ପଡ଼ିରହନ୍ତି । ଦିନରେ ତାଙ୍କର କଥା ଭାବନ୍ତି, ରାତିରେ ତାଙ୍କୁ ହିଁ ସ୍ୱପ୍ନ ଦେଖନ୍ତି । ତା' ଛଡ଼ା ମୋର ଆଉ କ'ଣ ବ୍ୟବସାୟ ଥାଆନ୍ତା ?

ରାତିରେ ଆକାଶରେ ଚନ୍ଦ୍ର ହସିଲାବେଳେ ଯେବେ ମେଘ ଭାସିଯାନ୍ତା, ମୁଁ ତାଙ୍କର ଛାଇ ବୋଲି ଚମକି ପଡ଼ନ୍ତି ! ବିଜୁଳି ମାରି ମେଘ ଗରଜିଲେ ମୁଁ କାନ୍ଦିଉଠନ୍ତି ! ସବୁଦିନେ ସକାଳୁ ସନ୍ଧ୍ୟା ଯାଏ ଡାକପିଅନକୁ ଚାହିଁ ରହନ୍ତି ! ଶେଷକୁ ଦିନେ ମୋ କୁଡ଼ିଆଦୁଆରେ କିଏ ଜଣେ ପଗଡ଼ିବନ୍ଧା ମୁଣାବୁହା ଲୋକ ଚିଠି ଖଣ୍ଡିକ ପକାଇ ଦେଇଯାନ୍ତା ।

ମୁଁ ତାକୁ ପଢ଼ିବସନ୍ତି···"

ମାଳତୀ ଏଇଠାରେ ପଚାରି ବସିଲା—"ସୁରମା, ତୁ କ'ଣ ପଢ଼ିଜାଣୁ କି ?"

"ନାହିଁ, ପଢ଼ନ୍ତି ନାହିଁ ଯେ, କାହାକୁ ନେଇ ପଢ଼ାନ୍ତି । ସେ ତ ସେ ଚିଠିରେ କେତେ କଥା ଲେଖିଥାନ୍ତେ । ଆହା, କେମିତି ଆମେ ଦିନରାତି ହସୁଥିଲୁ, ଖେଳୁଥିଲୁ, କେମିତି ମୁଁ ତାଙ୍କୁ ଥଟ୍ଟା-ପରିହାସ କରୁଥିଲି, ସେ କେମିତି ଅଛନ୍ତି, ମୁଁ କେମିତି ଚଳିବି,···ଆଉ ଚିଠିଟାକୁ ମୁଁ ଯେତେଥର ଧରୁଥାନ୍ତି, ସେତେଥର ମୁଁ ତାଙ୍କ ପାଖେ ପାଖେ ଥିଲାପରି ଜଣାପଡ଼ୁଥାନ୍ତା ।"

ଟିକିଏ ଥକା ମାରି ପୁଣି ସୁରମା କହିଲା—

"ସେହି ଚିଠି ଖଣ୍ଡିକ ଦେଇ ସେ ଯେବେ ଆଉ ଚିଠି ନ ଦିଅନ୍ତେ ମୁଁ କାନ୍ଦି-କାନ୍ଦି ଦିନ ଯାଉନ୍ତି ଗୋ ମାଳତୀ, ଦିନ ଯାଉନ୍ତି । ମୋ ଦୁଃଖ କିଏ ବୁଝନ୍ତା ? ତାଙ୍କ ବାଟ ଚାହିଁ ଚାହିଁ ଯେବେ ମାସେ ଯାନ୍ତା, ବର୍ଷେ ଯାନ୍ତା, ପାଞ୍ଚ ବର୍ଷ ଯାନ୍ତା, ତେବେ କି ଜଣ ତାଙ୍କର ବାହୁଡ଼ିବା ଆଶା ରଖନ୍ତି ନାହିଁ ? ଲୋକେ ଯେବେ ଆସି କହନ୍ତେ, ରେଙ୍ଗୁନର ସତେଇଶି ନମ୍ବର ଗଳିରେ ସେ ହୋଟେଲ କରି ଅଛନ୍ତି, ମୁଁ ସବୁଦିନେ ସନ୍ଧ୍ୟାବେଳେ ତୁଳସୀମୂଳରେ ତାଙ୍କପାଇଁ ମୁଣ୍ଡିଆ ମାରନ୍ତି । ଆଉ ମନେମନେ କହନ୍ତି—ତାଙ୍କୁ ଶୁଭରେ ରଖିଥାଅ ଗୋ ବୃନ୍ଦାବତୀ !

ସୁରମାର କଥା ବନ୍ଦ ହେଲା ନାହିଁ । ଅବାଧଶ୍ରୋତରେ ସେ କହିଲା—"ସିମିତ ଯେବେ ଆଠଶ ବର୍ଷେ, ଦଶ ବର୍ଷ, ଚାରି ବର୍ଷ, ପାଞ୍ଚ ବର୍ଷ କଟିଯାଆନ୍ତା, ତଥାପି ତାଙ୍କ କଥା ମନରୁ ପାସୋର ଯାନ୍ତା ନାହିଁ । ସେ ପରା ମୋର ଏ ଜୀବନର ଜୀବନ ହୁଅନ୍ତେ ! କାହାର ବଡ଼ କଥା ଶୁଣିଲେ ମୋ ଦେହ ଶୀତେଇ ଉଠନ୍ତା । କାହା ଦୁଆରେ ବାଇଦ ବାଜଣା ଶୁଣିଲେ କହନ୍ତ—ପ୍ରଭୁ ହେ, ମତେ ତାଙ୍କର ପଦତଳେ ନେଇ ପହଞ୍ଚେଇ ଦିଅ । ସବୁ ସିନା ହୁଅନ୍ତା, ତାଙ୍କୁ ସିନା ପାସୋର ପାରନ୍ତ ନାହିଁ; ମାତ୍ର ପୋଡ଼ପାଡ଼ ପେଟକୁ ତ ମୁଠେ ଖାନ୍ତ । ମୁଁ ସେତେବେଳେ କୁଳବୋହୂପଣ ଛାଡ଼ ଦାଣ୍ଡକୁ ଆସନ୍ତ ଗୋ ମାଳତୀ ! ମୋ ମୁଣ୍ଡ ତ କଟିଗଲା ପରି ଲଗନ୍ତା । ଲୋକେ ଯିଏ ଯାହା କହନ୍ତେ ପଛକେ, ମୁଁ ପେଟପାଇଁ ବାଧ୍ୟ ହୋଇ ପରଦୁଆରେ ଦାସୀ ହୁଅନ୍ତ । କେତେବେଳେ ହେଲେ ତାଙ୍କୁ ପାସୋର ପାରନ୍ତ ନାହିଁ ଗୋ, ପାସୋର ପାରନ୍ତ ନାହିଁ···"

ସୁରମା ଏତକ କହିସାରି ଜୀବ ଛାଡ଼ିଲାପରି କାନ୍ଥକୁ ଆଉଜିପଡ଼ିଗଲା । ତା'ର ଏ ଅବସ୍ଥା ଦେଖି ମାଳତୀ ପାଟିକଲା—"ମାଆ, ମାଆ, ମାଆ ! ସମସ୍ତେ ଆସି ଜମା ହୋଇଗଲେ । ବାମ୍ଭଣୀ ସୁରମାର ମୋହ ପୂର୍ଣ୍ଣରୂପେ ଭାଜିଲାବେଳକୁ କିଏ କହିବାର ସେ ଶୁଣିଲା—"ଆହା, କାହାର ବୋହୂ, କାହାର ଝିଅ ହୋଇ ଦାସୀ ହୋଇଛି ! କ'ଣ କରିବ, ବାମ୍ଭଣୀ ତ !"

ଏ ଘଟଣାର ଦିନକ ପରେ ଜଣାଗଲା, ସୁରମା ବାମ୍ଭଣୀ କୁହେଁ । ଦାସୀ ହୋଇ ଏପର୍ଯ୍ୟନ୍ତ ସେ ଯାହା କହୁଥିଲା, ତା'ର ସେ କଥା ଆତ୍ମକାହାଣୀ ।

ମାଳତୀର ବିବାହପୂର୍ବରୁ ରେଙ୍ଗୁନଫେରନ୍ତା ଜଣେ କିଏ ଆସି ତାଙ୍କ ଦୁଆରେ ଯେତେବେଳେ ସୁରମାର ସନ୍ଧାନ ଲୋଡ଼ିଲା, ମାଳତୀର ହୃଦୟରେ ଆନନ୍ଦସ୍ରୋତ ଦୁଇଗୁଣ ବଢ଼ିଗଲା ।

ମାଳତୀ ଗଲା ଶାଶୁଘରକୁ, ଆଉ ବାମ୍ଭଣୀ ସୁରମା ତା'ର ସ୍ୱାମୀ ସଙ୍ଗେ ଗଲା ଆପଣ ର ଭଙ୍ଗା କୁଡ଼ିଆ ଘରକୁ । କିନ୍ତୁ ଆନନ୍ଦ କାହାର ବେଶୀ ? ମାଳତୀ କାନ୍ଦିଲା, ସୁରମା କାନ୍ଦିଲା; ମାତ୍ର ମାଳତୀ ଲୁହରେ ଥିଲା ଭବିଷ୍ୟତର ଆନନ୍ଦ ସ୍ପର୍ଶ; ସୁରମା ଲୁହ ଅତୀତର ପୁଣ୍ୟସ୍ପର୍ଶରେ ରଙ୍ଗା ପାଲଟିଗଲା ।

• • •

# ମଦଦୋକାନର ଇତିହାସ

ପଞ୍ଚୁପଲ୍ଲୀ ଓ ବୋରଗାଁ ଭିତରେ ଯେ ବାଦବିବାଦ, କଳିତକରାଳ, ତାହା ଏ ଦେଶକୁ ଇଂରେଜ ସରକାର ଦଖଲ କରିବାର ଅଶୀ ବର୍ଷପରେ ଆରମ୍ଭ ହୋଇଥିଲା ।

କଳିର ମୂଳ କାରଣ ହେଉଛି, କେତୋଟି ଖଜୁରି ଗଛ । ବହୁ ଯୁଗରୁ ଏହି ଦୁଇଟା ଗାଁର ଲୋକେ ସେମାନଙ୍କର ଗାଁ ସରହଦରେ ଥିବା ଖଜୁରିକୋଳି ବିକି, ପଟ କାଟି ସୁଖ-ଶାନ୍ତିରେ ଚଳୁଥିଲେ । ଜାତିରେ ବାଉରି ହେଲେ କ'ଣ ହେଲା, ଗାଁମୁଣ୍ଡ ପାହାଡ଼ର କାଠ ଏବଂ ଗାଁ ପାଖ ନଈର ମାଛ ନେଇ ଜୀବିକା ନିର୍ବାହ କରିବାରେ ସେମାନଙ୍କର କିଛି ହେଲେ ଅଭାବ ଅସୁବିଧା ହେଉ ନ ଥିଲା ।

ମହାନଦୀର ବଢ଼ି ମାଡ଼ିଆସିଲାପରି ଅନେକ ଦିନ ପରେ ସେହି ଦୁଇଟା ଗାଁକୁ ତାଡ଼ି-ଯୁଗ ବା ମଦ୍ୟ-ଯୁଗ ଘୋଟିଆସିଲା । ପୁଣି ଜିଲ୍ଲା ସରକାର ଯେତେବେଳେ ଦୁଇଟା ଗାଁର ଏକ ମଝି ଜାଗାରେ ଗୋଟିଏ ତାଡ଼ି-କୁଡ଼ିଆ ପ୍ରତିଷ୍ଠା କଲେ, ଏହି ପଞ୍ଚୁପଲ୍ଲୀ ଓ ବୋରଗାଁର ଅଳ୍ପକେ ସନ୍ତୁଷ୍ଟ, ସଦା ପରିଶ୍ରମୀ ବାଉରି ଜାତିର ମୁହଁ ପାହାଡ଼ର କାଠଆଡ଼କୁ ବା ନଈର ମାଛ ଆଡ଼କୁ ଆଉ ଚଳିଲା ନାହିଁ । ତାଙ୍କ ଦାଣ୍ଡଦୁଆରେ ଥିବା ଖଜୁରିଗଛର କଣ୍ଟାଆଡ଼କୁ ସେମାନେ ଚାହିଁ ରହିଲେ ।

କଳି ଏହିଠାରୁ ଆରମ୍ଭ ହେଲା । ଯୁଧିଷ୍ଠିରଙ୍କ ଦ୍ୱାପର ଯୁଗପରେ କଳି ଯେ ମଦ ସଙ୍ଗେ ଆସିବା କଥା ପୁରାଣରେ ଲେଖା ଅଛି, ତାହା ସେଠାରେ ଶହ ଗୁଣରେ ପ୍ରମାଣିତ ହେଲା ।

କେତେକ ଦିନ ଗଲା । ବୋରଗାଁର ବଳିଷ୍ଠ ବାଉରିଦଳ ତାଡ଼ି କାଟି, ତାଡ଼ି ବିକି, ଦିନକେ ଯେତେବେଳେ ଦେଢ଼ ଚାରିପଇସା ରୋଜଗାର କଲେ ତାଙ୍କର ଜାତିଭାଇ ପଞ୍ଚୁପଲ୍ଲୀବାସୀଙ୍କ ମନ ଆଉ ରହେ କେମନ୍ତେକେ ? ଦେଖି-ଶିଖି ସେମାନେ ମଧ୍ୟ ସଙ୍ଗେ ସଙ୍ଗେ ତାଡ଼ି ବ୍ୟବସାୟରେ ଲାଗିଗଲେ ।

ତାଡ଼ିକଣ୍ଟା ଚାଲିଲା, ଅନବରତ ତାଡ଼ି ବିକା ମଧ୍ୟ ଚାଲିଲା । ଚାରି ପଇସା ରୋଜଗାର କରୁଥିବା ଲୋକ ଦୁ' ପଇସାର ତାଡ଼ି ପିଇ ଆନନ୍ଦରେ ନାଚିଲା । କ୍ରମେ ତାଡ଼ି ଦୋକାନର ପୁରୁଣା ପତ୍ରକୁଡ଼ିଆ ଖଣ୍ଡିକ ବେଶ୍ ବାସଯୋଗ୍ୟ ଘରେ ପରିଣତ ହେଲା । ପ୍ରଥମେ ପ୍ରଥମେ ଚଷା, ଖଣ୍ଡାୟତ, କ୍ରମେ କ୍ରମେ ବ୍ରାହ୍ମଣ କରଣଙ୍କ ଗହଳ ଚହଳ ମଧ୍ୟ ସକାଳେ ସଂଧ୍ୟାରେ ସେହି ତାଡ଼ିଦୋକାନ ସୀମାରେ ଶୁଣାଗଲା ।

ବ୍ୟବସାୟ ଯେତିକି ବଢ଼ିଲା ଲୋକେ ସେତିକି ମଜୁଆଳ ହେଲା ପରି ତାଡ଼ିକଣ୍ଟାରେ ଲାଗିଲେ । ଦିନକୁ ଦିନ ଦୋକାନପାଇଁ ବେଶି ତାଡ଼ି ଲୋଡ଼ା-ପଡ଼ିଲା । ବାଉରି ବେପାରୀଦଳ ଉଚ୍ଛନ୍ନଭାବରେ ପଇସା ଲୋଭରେ, ନିଶା ଭୋଳରେ ଶିଶୁ ଖଜୁରି ଗଛକୁ ମଧ୍ୟ ଆଖି ପକାଇଲେ । ତଥାପି ଖଜୁରି ଗଛ ନଅଣ୍ଟ ହେଲା—ଲୋକଙ୍କ ରୋଜଗାର ଦିନକୁ ଦିନ ଯେ ବଢ଼ୁଥିଲା, ଗଛ ଅଭାବରେ ତାହା ବନ୍ଦ ହୋଇଗଲା ।

ଏହିପରି ସମୟରେ ଦିନେ ଶୁଣାଗଲା ଯେ ବୋଉଗାଁର ଖଜୁରି ଗଛରୁ ତାଡ଼ିମାଠିଆ ଚୋରିଯାଇଛି । ଏ ଚୋରି ବାର୍ତ୍ତା ଶୁଣି ପଞ୍ଚୁପଲ୍ଲୀବାସୀ ସଂକୁଚିତ ହୋଇପଡ଼ିଲେ ।

ଏହି ଘଟଣାର ଦୁଇଦିନ ପରେ ଦେଖାଗଲା ଯେ ପଞ୍ଚୁପଲ୍ଲୀ ଗାଁ ଖଜୁରି ଗଛରେ ଗୋଟିଏ ହେଲେ ବଡ଼ ମଦମାଠିଆ ନାହିଁ; କଏ ହିଂସାରେ ଠେକା ମାରି ଭାଙ୍ଗିଦେଇଛି । ଏ ଅବସ୍ଥା ଦେଖି ପଞ୍ଚୁପଲ୍ଲୀବାସୀ ଉତ୍ତେଜିତ ହୋଇ କହିଉଠିଲେ—

"ଏ କୃତ୍ୟ ବୋଉଗାଁ ଲୋକଙ୍କର, ବୋଉଗାଁ ଲୋକଙ୍କର !"

ବିଡ଼ି ଭାଣ୍ଡିରେ ଏ ଅପମାନ କଥା ବୋଉଗାଁବାସୀ ସହିପାରିଲେ ନାହିଁ । ତେଣୁ ଦୁଇ ଗାଁର ସର୍ବନାଶର ମୂଳାଧାର ତାଡ଼ିମଣ୍ଡପ ପାଖେ କହିବୁଲିଲେ—

"ପଞ୍ଚୁପଲ୍ଲୀଆଙ୍କର ଏ ତାଡ଼ି ବେପାର ନ ଭାଙ୍ଗୁଛୁ ତ ଆମ ଗାଁ ବୋଉଗାଁ ନୁହେଁ !!"

ଦିନ ଦିନ, ମାସ ମାସ, ବର୍ଷ ବର୍ଷ ହୋଇ ଦୁଇଟି ଗାଁର ମଦବେପାରୀ ଏହି ବାଉରିଙ୍କ ଶୋଷଣ ପ୍ରତିଜ୍ଞାର ବିଷମୟ ଫଳ କେବଳ ଫଳିଲା ନାହିଁ, ଫଳ ସେଥିରୁ ପୁଣି ଗଜା ବାହାରିଲା । ପାଧାଡ଼ି ପାଖେ, ନଈକୂଳେ, ଗଛମୂଳେ, ଗାଁ ବାହାରେ, ତାଡ଼ି ଦୋକାନରେ କଥାରେ, କାର୍ଯ୍ୟରେ, ହାତରେ

ଗୋଡରେ—କିଏ କହାର କେତେ ପ୍ରତିଶୋଧ ନେଲା । ଚିରବନ୍ଧୁ ହୋଇଥିଲେ ଯେଉଁମାନେ, ସାମାନ୍ୟ ତାଡ଼ି ଟୋପାଏ ସେମାନଙ୍କୁ ଚିରଶତ୍ରୁଭାବରେ ଠିଆ କରାଇପାରିଲା ! ଦିନକୁ ଦିନ ବିବାଦ ବଢ଼ିଲା ସିନା, କମିଲା ନାହିଁ । ଦିନକୁ ଦିନ ଜଳନ୍ତା ନିଆଁରେ କୁଟା ପଡ଼ିଲା ସିନା, କେହି ତାହା ନିବାରଣ କରି ପାରିଲେ ନାହିଁ ।

ଶେଷରେ ଗାଁ ଉଜୁଡ଼ିଲା—କେତେ ଘର ଭାଙ୍ଗିଲା ।

ଦିନେ ସକାଳେ ଦେଖାଗଲା ଯେ ପଞ୍ଚୁପଲ୍ଲୀର ସବୁ ଖଜୁରି ଗଛ କେହି କିଏ କାଟିପକାଇଛି !

ଗ୍ରାମବାସୀ ମୁଣ୍ଡରେ ହାତ ଦେଇ ବସିପଡ଼ିଲେ ।

ନିଷ୍ଠୁର ଗ୍ରୀଷ୍ମପରେ ଧରଣୀ ପୁଣି ବର୍ଷା ପାଇ ହସିଉଠିଲାପରି କିଛି ବର୍ଷର ଦୁଃଖ-କଷ୍ଟ ଅଶାନ୍ତିପରେ ପଞ୍ଚୁପଲ୍ଲୀବାସୀଙ୍କ ଭାଗ୍ୟ ପୁଣି ଫିଟିଲା । ଖଜୁରି ଗଛ ହରାଇ, କିଛି ଦିନ ଅନ୍ନ କଷ୍ଟରେ ରହିଲାପରେ ପୁଣି ସେହି ପୁରୁଣା ପରିଚିତ ପାହାଡ଼ର କାଠ ଓ ଆପଣାର ନଈଆଡ଼କୁ ଆଖି ପକାଇଲେ, ତାଙ୍କର ପୂର୍ବସ୍ମୃତି ଜାଗିଉଠିଲା । ପାହାଡ଼ଟା ତାଙ୍କୁ ରତ୍ନଭଣ୍ଡାର ପରି ପାତାଳ କୋଳ ଯୋଗାଇଲା । କୋଳ ବିକି, କାଠ କାଟି, ନଈରେ ମାଛ ଧରି ପୁଣି ଗୃହ-ସଂସାରକୁ ନବଭାବରେ ଗଢ଼ିବାକୁ ଲାଗିଲେ । ହେଲେ କ'ଣ ହେବ, ବୋଉରିଗାଁର ଖଜୁରି ଗଛ ଓ ମଦଦୋକାନଆଡ଼କୁ ଚାହିଁଲେ ସେମାନଙ୍କ ପ୍ରାଣ ରାଗରେ ଜଳିଉଠେ । ଦାନ୍ତ ଚିପି, ମୁହଁ ବୁଲେଇ ସେମାନେ ନଈ ପାହାଡ଼ ଆଡ଼କୁ ଫେରିଯାନ୍ତି ।

ଏହି ଘଟଣାର ପ୍ରାୟ ଦୁଇ ବର୍ଷପରେ ଓଡ଼ିଶା ରାଜ୍ୟରେ ପ୍ରବଳ ବର୍ଷା ହେଲା । ଗ୍ରାମ ସହର ଜଳାର୍ଣ୍ଣବ ହୋଇଗଲା । ଗାଈ ଗୋରୁ ଭାସି ବୁଡ଼ିମଲେ । ବଡ଼ ବଡ଼ ଦ୍ରୁମ ଝଞ୍ଜା-ବତାସରେ ପାହାଡ଼ରୁ ଉପୁଡ଼ି ନଈରେ ଭାସିଆସିଲା ।

ସେହି ବର୍ଷର କଥା—

ଦିନେ ରାତିରେ ପଞ୍ଚୁପଲ୍ଲୀବାସୀ ଦେଖିଲେ ଯେ ନଈ ବେଳକୁ ବେଳ ଯେପରିଭାବରେ ବଢ଼ୁଛି ସେମାନଙ୍କ ଉଚ୍ଚ ଗାଁର କିଛି କ୍ଷତି ନୋହିପାରେ; ମାତ୍ର ନଈ ପାଖର ବୋଉରିଗାଁ ସୀମାବନ୍ଧ ଭାଙ୍ଗି ଯେବେ ଥରେ ପାଣି ପଶେ ତାହା ହେଲେ ବୋଉରିଗାଁଟା ମୂଳପୋଛ ଧୋଇଯିବ ।

ଏ କଥା ପଞ୍ଚୁପଲ୍ଲୀଆଙ୍କ ମନରେ ଜାଗିବା ସଙ୍ଗେସଙ୍ଗେ ବୋଉଗାଁ ପ୍ରତି ସେମାନଙ୍କ ପ୍ରତିଶୋଧର ପିପାସା ପ୍ରବଳ ହୋଇଉଠିଲା । ବହୁ ଯୁଗର ସ୍ନେହ-ମମତା, ପ୍ରୀତି-ପରିଚୟ ପାସୋର ଦେଇ ଗାଁଲୋକେ ବିସ୍ମର କଲେ, "ଏତିକବେଳେ ଦାଉ ଶୁଝିବା ଠିକ୍ ହେବ । ଗୋଟା ଗୋଟା ଖଜୁରି ଗଛ କାଟି ଦେଇଥିଲେ ପରା; ଦେଖନ୍ତୁ ଏବେ ଗୋଟା ଗୋଟା ଘର କମିତି ଭାସିଯିବ "।

ଏହି ପାପଚିନ୍ତାରେ ବୁଡ଼ ପଞ୍ଚୁପଲ୍ଲୀବାସୀ ଗାଁର ଆଠଜଣ ଭେଣ୍ଡିଆଙ୍କୁ ବୋଉଗାଁ ସୀମାବନ୍ଧ କାଟିଦେବାକୁ ଅନ୍ଧାର ରାତିରେ ପଠାଇଦେଲେ । ଠେଙ୍ଗା, ଖଣତା, ହତିଆର ହାତରେ ଧରି ସେମାନେ ସ୍ବୈରଙ୍କପରି ବନ୍ଧେ ବନ୍ଧେ ଗ୍ଲଲେ । ଏଣେ ଗ୍ରାମବାସୀ ବ୍ୟଗ୍ର କୌତୂହଳରେ ସେମାନଙ୍କ ଆଗମନକୁ ପ୍ରତୀକ୍ଷା କରି ଭାଗବତଘରେ ବସିରହିଲେ ।

× × ×

ରାତି ପାହିଲା । ଅଁଳୂଅ ହେଲା । ପଞ୍ଚୁପଲ୍ଲୀ ଗାଁମୁଣ୍ଡେ ଦେଡ଼ଶ, ଦୁଇଶ ଲୋକ ଜମା ହୋଇଛନ୍ତି; ବନ୍ଧକଟାଳ ଦଳ ଓଦା-ସରସର ହୋଇ ଆସି ଆଗରେ ଠିଆହୋଇଗଲେ ।

ଗାଁର ମୁଖିଆ ମଧୁ ନାହେକେ ପାଟି କରି ପଚାରିଲେ, "କରେ, ଏତେ ହନେ ଦାଉ ଶୁଝେଇ କଣ ଗାଁର ମାନ ରଖିଲ ?"

—"ହଁ, ରଖିଲୁ ।"

—"କ'ଣ ଗାଁଟା ସବୁ ଯାଇଛି, ନା, ଘରେ ଢ'ଘର ଅଛି ?"

ଜନତା ଭିତରେ କଏ କେତେ କଥା କହିଲେ । ପୁଣି ପ୍ରଶ୍ନ ହେଲା— "ଭାସି ବୁଡ଼ିମଲାବେଳେ କଏ କ'ଣ କହିଲେ ଭଲା ?"

ବନ୍ଧକଟାଳ ଭିତରୁ ଜଣେ ଦମ୍ଭରେ ଠିଆହୋଇ ଗମ୍ଭୀରଭାବରେ ଉତ୍ତର ଦେଲା—"ନା, ଜଣେ ସୁଦ୍ଧା ଭାସିନାହାନ୍ତି କି ବୁଡ଼ିନାହାନ୍ତି !"

ମଧୁ ନାହାକେ ଆଖି ତରାଟି ପଚାରିଲେ—"ଏଁ କ'ଣ କହିଲୁ ? ଜଣେ ହେଲେ ନା!"

—"ହଁ, ଜଣେ ହେଲେ ନୁହେଁ । ଆମେ ଗଲାବେଳକୁ ଗାଁ ଭିତରକୁ ପାଣି ମୁହାଇଁଆସି ବନ୍ଧ ଲାଗିଥିଲା । ଲୋକଙ୍କ ବିକଳ ଦେଖି, ସେ ଚହ୍ଲା-

ପରିଚିତ ମୁହଁ ଦେଖି, ହନ୍ତଆର ଆଦୌ ଚଳିଲା ନାହିଁ । ଧାଇଁ ଯାଇଁ ହାତରେ, ପିଠିରେ, ନାଆଁ ଧରି ସମସ୍ତଙ୍କୁ ଉପରକୁ ବୋହିଆଣି ଠିଆ କରାଇଦେଲା ।

—"ତା'ପରେ ?"

—"ତା'ପରେ ? ସେମାନେ ରକ୍ଷା ପାଇଲା ଉତ୍ତାରୁ ଆମ ମୁହଁକୁ ଚାହିଁ ଲଜ୍ଜାରେ ମୁହଁ ପୋତିଦେଲେ । ଆଉ କଣ ବାଜ ବାଧିବ ?"

କଏ କଏ କହିଲେ—"କୁଳାଙ୍ଗାର, କୁଳାଙ୍ଗାର, ଶତ୍ରୁକୁ ଜାଣି ଜାଣି ଛାଡ଼ିଦେଲା ।"

ଆଉ କଏ କଏ କହିଲେ—"ଠିକ୍ ହେଲା ଠିକ୍ ହେଲା । ମରିବାଠୁଁ ବେଶୀ ହେଲା ।"

ଦେଖାଗଲା ସେହି ଦିନଠାରୁ ଆଉ ଦୁଇଟା ଗାଁରେ କଳିତକରାଳ ରହିଲା ନାହିଁ ।

ଏ ଘଟଣାର ଏବେ ପଚିଶ ବର୍ଷ ପରେ ଯେ କୌଣସି ଲୋକ ପଞ୍ଚୁପଲ୍ଲୀ ଗାଁମୁଣ୍ଡେ ଏକ ଢିପ ଜାଗାରେ ଠିଆହୋଇ ମଦ ଦୋକାନର ଇତିହାସ ସଂଗ୍ରହ କରିପାରିବ ।

ତାହା ଏବେ ଏକ ମାଟିଗଦା ମାତ୍ର ।

● ‿ ●

# ତା'ପରେ ?

ଅତି ବୃହତ୍ ଏ ପୃଥିବୀର ଏକ କ୍ଷୁଦ୍ର କୋଣରେ ବସି ଆଜ ଯେଉଁ କଥାଟି କହିବି, ତାହା ଅତି ପ୍ରାଚୀନ ନୁହେଁ; ଖାଣ୍ଟି ନୂତନ ମଧ୍ୟ ନୁହେଁ । ମାତ୍ର ଭାଗ୍ୟ-ଦୋଷରୁ ହେଉ ବା ଭଗବାନ୍ଙ୍କ କରୁଣାରୁ ହେଉ, କିମ୍ବା କେଉଁ ଅପଶକ୍ତିର ଅଭିଶାପରୁ ହେଉ, ଏକଥାସବୁ ଓଡ଼ିଶାର ନିତ୍ୟପ୍ରବୃତ୍ତି ବର୍ତ୍ତମାନ ଅବସ୍ଥାରେ ଆସି ପହଞ୍ଚିଲାଣି ।

ସେଦିନ ଅତି ନବୀନ ଆମେ କେତୋଟି ବସି ଗପ କରୁଥିଲୁ । ବନ୍ଧୁ ମୋର ବଡ଼ ଆକ୍ଷେପ କରି କହିଲେ—"ଏ ସଂଖ୍ୟାରେ ଯେବେ ତୁମର ଗୋଟିଏ ପ୍ରେମଗଳ୍ପ ନ ବାହାରିବ, ତାହା ହେଲେ ନିତାନ୍ତ ଅସୁନ୍ଦର ହେବ । ଜଣାଯିବ ଯେ ତୁମେ ଜଣେ ବଡ଼ ବେରସିକ ବନ୍ଧୁ । ଏଣିକି ବୁଝାଯିବ, ଆମ ଅନୁରୋଧ ପ୍ରତି ତୁମର ଭ୍ରୂକ୍ଷେପ ସୁଦ୍ଧା ନାହିଁ ।"

କହିଲି—"ପ୍ରେମଗଳ୍ପ ! ବେଶ୍ ତ ! ଏ ଅନୁରୋଧ ରକ୍ଷା ନ କରି ହେବ ବା କାହିଁକି ?"

ବନ୍ଧୁ କହିଲେ—"ଛଳଛଳ ଚାହାଣି, କଳକଳ ବଚନ, ଢଳଢଳ ଲୋଚନ, ଗୋଲାପି ଶାଢ଼ୀ, ହୋସେନ ହେନାର ଗନ୍ଧ, ଯୂଈ ଫୁଲର ମାଳା, ନୀଳଶାଢ଼ୀର ତରଙ୍ଗିତ ପଣତ, ଆରକ୍ତ ଅଧର, ସୁଗୋଲ ବାହୁ, ଖିଲଖିଲ ହସ—ଏସବୁକଥ ବା ଏହିପରି କିଛି ସେ ଗଳ୍ପରେ ରହିବ ତ ?"

ଟିକିଏ ନୀରବ ରହି କହିଲି —"ଠିକ୍ ଏହିପରି; ଠିକ୍ ଏହି ଭଳିଆ ବର୍ଣ୍ଣନା । ମାତ୍ର ଆଖିରୁ ଯେବେ ଲୁହ ଶୁଖିଯାଇଥିବ, ଓଠ ଯେବେ ଶୁଖି କଳା ପଡ଼ିଯାଇଥିବ, ଗୋଲାପି ଶାଢ଼ୀ ଯେବେ ମଇଳା କନାରେ ପରିଣତ ହୋଇଥିବ, ଅପାଙ୍ଗ ଚାହାଣି ଯେବେ ବିଭତ୍ସ ହୋଇପଡ଼ିଥିବ, ହାସ୍ୟରୋଳଗ୍ରାହୀ କଣ୍ଠ ଯେବେ ପଡ଼ିଯାଇଥିବ, ସେବେ କ'ଣ ଚଳିବ ନାହିଁ ? ଏଥିରେ କ'ଣ ଆପତ୍ତି ଅଛି ?"

ବନ୍ଧୁବର ଆଖିଡୋଳାକୁ ବଡ଼ଦେଇକରି ଚକାଡୋଳାଙ୍କପରି ସ୍ଥିର ରଖି କହିଲେ—"ଏ କିପରି କଥା ? ଏ କି ପ୍ରେମଗଳ୍ପର ବର୍ଣ୍ଣନା କଥା କହୁଛ ? ତୁମେ କ'ଣ ମଶାଣିରୁ ଉଠିଆସିଛ କି ? ଏ ଯେ ବନ୍ୟା-ଦୁର୍ଭିକ୍ଷପୀଡ଼ିତ କେତେଗୁଡ଼ାଏ ପ୍ରେତ-ପ୍ରେତିନୀଙ୍କ ଚିତ୍ରକଥା କହୁଛ ! ତୁମ କଥା ଶୁଣି ମୁଁ ଅବାକ୍ !!"

ଆଉ ଧୈର୍ଯ୍ୟ ଧରି ନ ପାରି କହିଲି—"ମୁଁ ମଶାଣିରୁ ଉଠିଆସିଥିବା ଏକପ୍ରକାର ସତ, ଆଉ ତମେ ଅବାକ୍ ହେବା ମଧ୍ୟ ଉଚିତ । ମନେରଖିଛ ନା ବନ୍ଧୁ, ଏ ଦେଶଟା ଓଡ଼ିଶା । ଏ ହେଉଛି ବନ୍ୟା-ଦୁର୍ଭିକ୍ଷର ଦେଶ, ଏ ନିଷ୍ପେଷିତଙ୍କ ଦେଶ, ଏ ଅବହେଳିତଙ୍କ ଦେଶ···ମନେରଖିଛ ନା ଏସବୁ କଥା ?"

ବନ୍ଧୁ ଟିକିଏ ସ୍ତମ୍ଭିତ ହୋଇ ପଚାରିଲେ—"ଯା ସହିତ ତୁମ ଗଳ୍ପର ସମ୍ପର୍କ କ'ଣ ?"

ସ୍ଥିରଭାବରେ କହିଲି—"ମୋ ସହିତ ମୋ ବଚନର ଯେ ସଂପର୍କ ଓ ଫୁଲ ସହିତ ସୌରଭର ଯେ ସଂପର୍କ !"

ବନ୍ଧୁ ଆଳାପରେ ଆଉ ବେଶୀ ସମୟ ଅଟକି ନ ପାରି ପଚାରିଲେ—"ଗଳ୍ପଟା କ'ଣ ଏହିପରି ଏଇଠାରୁ ଆରମ୍ଭ କରୁଛ ତାହା ହେଲେ ?"

କହିଲି—"କ୍ଷତି କ'ଣ ? ୧୮୬୬ ଖ୍ରୀଷ୍ଟାବ୍ଦର ନିଦାଘ ଗ୍ରୀଷ୍ମ ସମୟ । ତୃଷାତୁର ଧରଣୀର ଚିତ୍କାର ନରନାରୀକଣ୍ଠରେ, ପଶୁପକ୍ଷୀକଣ୍ଠରେ ଶୁଣାଯାଉଥିଲା । ତରୁଲତା ଏ ଚିତ୍କାର ଶୁଣି ଶୁଣି ହା-ହତାଶଭାବରେ ପତ୍ରଗୁଡ଼ାକ ଝାଡ଼ିଦେଉଥିଲେ । କେବେକେବେ ଅଗ୍ନିମିଶା ପବନ ପୁର-ପ୍ରାନ୍ତର ସିଝାଇ-ଦେଇ ବହିଯାଉଥିଲା ।

ଏହିପରି ସମୟରେ ପୁରୀ ଜିଲ୍ଲାର ଭାର୍ଗବୀକୂଳରେ ଚିରଶ୍ୟାମଳ ପୁନ୍ନାଗ କୁଞ୍ଜଭିତରୁ ବାହାରି ଏକ ପ୍ରେତବାହିନୀ ପୁରୀ ଅଭିମୁଖରେ ଯାତ୍ରା ଆରମ୍ଭ କଲେ । ଏ ଯାତ୍ରା କାହାରି ତୀର୍ଥଯାତ୍ରା ନୁହେଁ । ଏଥିପାଇଁ ଗାଁରେ ପାଞ୍ଜି ଦେଖାଯାଇ ଅନୁକୂଳ ବଛାଗଲା ନାହିଁ । ଗାଁଗହଳଭିତରୁ ଏଥିଲାଗି ଶୁଭ ହୁଳହୁଳି ଧ୍ୱନି ଶୁଣାଗଲା ନାହିଁ । କିଏ କାହାକୁ ଏଥିଲାଗି ଅଭ୍ୟର୍ଥନା କଲା ନାହିଁ କି କିଏ କାହାକୁ ଯାତ୍ରାପଥରେ ଯିବାପାଇଁ ବାରଣ କଲା ନାହିଁ । କିଏ କାହାପାଇଁ କାନ୍ଦିଲା ନାହିଁ କି କିଏ କାହାକୁ ହାତ ଟେକି ଆଶୀର୍ବାଦ ମଧ୍ୟ କଲା ନାହିଁ ।

ଗାଁରୁ ବାହାରିଲେ ଏହି ବିଚିତ୍ର ଯାତ୍ରୀଦଳ । ଏମାନଙ୍କ ବେଶବାସ ଅତି ବିଚିତ୍ର ଧରଣର । ସମସ୍ତଙ୍କ ଦେହରେ କନା—କନା ଛଡ଼ା ଲୁଗା ଖଣ୍ଡିଏ କାହାର ନାହିଁ । ସେ କନା ପୁଣି ସାତଠା ସିଲେଇ ହୋଇଛି । ହାସ୍ୟରେଖା କାହା ଅଧରରେ ନାହିଁ, ଯାତ୍ରାର ଆନନ୍ଦ କାହା ମୁଖମଣ୍ଡଳକୁ ଆଲୋକିତ କରୁ ନାହିଁ, ନିତାନ୍ତ ନିର୍ବେଦ-ନିସ୍ତେଜଭାବରେ ·କେବଳ କେତେଗୁଡ଼ାଏ ମାତ୍ର କଙ୍କାଳରୂପୀ ପ୍ରେତ-ପ୍ରେତିନୀଙ୍କର ଯାତ୍ରା ଆରମ୍ଭ ହେଲା ।

ବିଶ୍ୱବିଜୟୀ ସିକନ୍ଦର ଯେତେବେଳେ ଜୈତ୍ରଯାତ୍ରା ଆରମ୍ଭ କରିଥିଲେ, ସେତେବେଳେ ତାଙ୍କ ଗତିପଥରୋଧ କରିବା ଦରକାର ପଡ଼ିଥିଲା । କିନ୍ତୁ ଦିନେ ଊନବିଂଶ ଶତାବ୍ଦୀର ଶେଷଭାଗରେ ଦଳେ କଙ୍କାଳବାହିନୀଙ୍କ ପଥରୋଧ କରିବାକୁ ଯେ କିପରି ଦରକାର ପଡ଼ିଥିଲା, ସେ କଥା ତୁମେ, ଆମେ ବା ଆଉ କିଏ ଅତି ପରିଚିତ ଧରଣୀବାସୀ ସହଜ ବୁଦ୍ଧିରେ ବୁଝିପାରିବା ନାହିଁ ।

ମାତ୍ର ଜଗତର ନାଥ 'ଜଗନ୍ନାଥ' ମୂକ—ଏ କଥା ଯେପରି ସତ୍ୟ, ଏ କଙ୍କାଳବାହିନୀଙ୍କ ଯାତ୍ରାପଥରେ ଅବରୋଧ କରିବା କଥାଟା ମଧ୍ୟ ଠିକ୍ ସେହିପରି ସତ୍ୟ । ଏଥିର କିଏ ପ୍ରତିବାଦ କଲେ ପ୍ରକୃତତତ୍ତ୍ୱ ଅନୁସନ୍ଧାନପାଇଁ ଉତ୍ସୁକଙ୍କର ମଡ଼ାପଡ଼ିଆ ନାମକ ସ୍ଥାନକୁ ତାଙ୍କୁ ପଠାଇଦେବା ଦରକାର । ସେ ଅନୁସନ୍ଧାନରେ ଦେଖା ପଡ଼ିବ ବହୁତ ଜିନିଷ, ଶୁଣାଯିବ ବହୁତ କାହାଣୀ ।

ସେହି ମଡ଼ାପଡ଼ିଆ ଲୋକର ଗୋଟିଏ ବହୁକାଳର ନିଷ୍ପେଷିତ କ୍ଷୁଦ୍ର କାହାଣୀ ଏହିଠାରେ କୁହାଯିବ । ସେଠାରେ ଏକ ବିରାଟ କଙ୍କାଳବାହିନୀକୁ ବାଧ ଦେବା ଦରକାର ପଡ଼ିଥିଲା । "ନ' ଅଙ୍କ" ଦୁର୍ଭିକ୍ଷର କରାଳ ସର୍ବଗ୍ରାସୀ ଲୀଳା ଯେତେବେଳେ ଓଡ଼ିଶାର ପୁରପଲ୍ଲୀରେ ଚାଲିଥିଲା, ପୁଣି ସେତେବେଳେ ବହୁ ଜନାକୀର୍ଣ୍ଣ ଏବଂ ତହିଁ ସଙ୍ଗେ ସଙ୍ଗେ ବହୁ ମଡ଼ାକୀର୍ଣ୍ଣ ମଧ୍ୟ ।

ପ୍ରକାଣ୍ଡ ପ୍ରାନ୍ତର; ଯେଉଁ ଦିଗକୁ ଚାହିଁବ ସେଆଡ଼େ ସାହାରାର ଦୃଶ୍ୟ । ବେଳ ଦୁଇଘଡ଼ିଠାରୁ ବେଳ ଦୁଇଘଡ଼ି ଥିବା ମଧ୍ୟରେ ଚତୁର୍ଦ୍ଦିଗରେ କେବଳ ଅଗ୍ନି ଜୁଆର ନାଚଉଠୁଛି । ବିଲରେ ଫସଲ ନାହିଁ, ପାଖ ଗଛଦେହରେ ଶାଗୁଆ ପତ୍ରଟିଏ ସୁଦ୍ଧା ନାହିଁ । ଧରଣୀରେ ସଜୀବତା ନାହିଁ, ଗଗନରେ ମେଘ ନାହିଁ । ଆଉ ତାହାରି ମଧ୍ୟରେ କେବଳ କେତେଗୁଡ଼ାଏ କଙ୍କାଳ କେଉଁ ଅସୁର-ପୁରୀରେ ବନ୍ଦୀ ଥିଲା ପରି ସେହି ଅଗ୍ନିବର୍ଷାମଧ୍ୟରେ ତାଙ୍କୁ ଦେଖାଇ ଦେଇ ଛଟପଟ ହେଉଛନ୍ତି ! ମଝିରେ ମଝିରେ ଶୁଭୁଛି ଠେଙ୍ଗାର ଠକ୍‌ଠାକ୍ ଶବ୍ଦ—

ଚାହାଁଛଡ଼ା ସବୁବେଳେ ଅଗଣିତ ବୁଭୁକ୍ଷୁଙ୍କର ଦୀର୍ଘଶ୍ୱାସରେ ସେହି ଗୁଳ୍ମଗୁଳଅ କ୍ଳାନ୍ତ ପବନ ବିଚଳିତ ହୋଇପଡ଼ୁଛି ।

ସେଠାରେ ଦେବତା ତ କେହି ନାହାନ୍ତି, ମନୁଷ୍ୟ କେହି ନାହାନ୍ତି କହିଲେ ମଧ୍ୟ ଚଳେ ! କେବଳ କେତେଗୁଡ଼ାଏ କଙ୍କାଳକୁ ଆଉ କେତେଗୁଡ଼ାଏ କଙ୍କାଳ ଜଗିଛନ୍ତି ମାତ୍ର !

ପତିତପାବନ ପ୍ରଭୁ ଜଗନ୍ନାଥଙ୍କର ଶାନ୍ତି ଦରକାର କି ନିରନ୍ନ ବୁଭୁକ୍ଷୁ କଙ୍କାଳଗୁଡ଼ାଙ୍କର ଶାନ୍ତି ଦରକାର, ଏ ବିଷୟରେ ଏହି ଠେଙ୍ଗାଧରା ଚଉକି-ଦାରଗଣ ଶିକ୍ଷା ଲାଭ କରୁଛନ୍ତି । ସେଥି ଭିତରେ ମାଳିକପଡ଼ାର ହରି ମଳିକ ତା'ର ଠେଙ୍ଗାଟାକୁ ତଳେ ଠକ୍-ଠକ୍ କରି ତା'ର ସାଥୀ ଘନିଆକୁ କହିଲା— "କହ ଭାଇ, ବାନାତଳେ ମଲେ ଲାଭ କି ଏଠି ମଲେ ଲାଭ ?"

ଘନିଆ କହିଲା—"ବାନାତଳେ ମଲେ ଏମାନଙ୍କର ଲାଭ; ଏଠି ମଲେ ଆମର ଲାଭ । ବାନାତଳେ ମଲେ ଏମାନେ ମୁକ୍ତି ପାଇବେ; ମାତ୍ର ଆମକୁ ମଢ଼ା ଉଠାଇବାକୁ ପଡ଼ିବ । ଆଉ ଏଠି ମଲେ ଆମେ ନିଶ୍ଚିନ୍ତ ।"

ହରିଆ କହିଲା—"କାହା କଥା କହୁଚ ଭାଇ ?"

"ତୁ ଯାହାଙ୍କ କଥା ପଚାରୁଚୁ । ଏହି ଉପାସିଗୁଡ଼ାକ କଥା ।"

"ନାହିଁ ଭାଇ, ପଚାରୁଚି ମୋର କଥା ! ଏଗୁଡ଼ାକ ଆଉ ମରିବେ କ'ଣ ? ଏମାନେ ମରିସାରିଛନ୍ତି । ଏଠି ତ ଆଠଦିନ ହେଲା ଆମେ ଜଗିରହିଲେ । କହ ଭଲା, ଏ ଆଠଦିନ ଭିତରେ ଏମାନଙ୍କ ମୁହଁରେ ପାଣି ଟୋପେ କିଏ ଦେଲା ? ଆଉ ଏବେ ସେ ବିକଟ ଚିତ୍କାର ଶୁଣୁଚୁ ନା ? ଶୀତଦିନିଆ ନଇର ପାଣି ଖରା ଲାଗି ଆସ୍ତେ ଅସ୍ତେ ଯେମିତି ନଇବାଲିରେ ଲୀନ ହୋଇଆସିଲାପରି ଏମାନଙ୍କର ଜୀବନ ଧୀରେ ଧୀରେ ସରିଆସୁଛି । ଏଇ ଦେଖ୍, ମଲାପରି ଏଇ ଉପରେ ଉପରେ ପଡ଼ି ଜମାହୋଇଛନ୍ତି ଯେଉଁମାନେ, ସେମାନେ କି ଆଉ ଉଠିବେ ?" କହୁ କହୁ ତା'ର ଶୁଖିଲା ନିଷ୍ପ୍ରଭ ଆଖିଭିତରୁ କୁଆଡ଼ୁ ଦି' ଟୋପା ଲୁହ ଗଡ଼ପଡ଼ି ତା' ବୁକୁ ଉପରେ ପଡ଼ିଗଲା ।

ଘନିଆ କହିଲା—"ପାଗଳ !"—କହିଦେଇ ସେ କ'ଣ ଭାବୁଛି, ଭାବୁ ଭାବୁ ବସିପଡ଼ୁଛି ।

କେତେବେଳ ହେଲା, ଖରା ଠିକ୍ ମୁଣ୍ଡ ଉପରେ ଛୁଟିଲା; ଘନିଆ ତା’ ଭାବନା-ସ୍ୱପ୍ନରୁ ଉଠି ମୁଣ୍ଡଟେକ ଚାହିଁ ଦେଖିଲା ତା’ ଆଗରେ ତା’ର ପ୍ରିୟ ପଲ୍ଲୀ ବନପଡ଼ାର ଛାୟା ସୁଦ୍ଧା ନାହିଁ । ତାହା ଭିତରେ ତା’ର କ୍ଷୁଦ୍ର କୁଟୀର ଖଣ୍ଡିକ ଭାଜିପଡ଼ିଛି । ପ୍ରାଣର ପ୍ରିୟଜନସକଳ କୁଆଡ଼େ ଘର ଛାଡ଼ି ଯାଇ ଏହିପରି ଏକ ଚଉକିଦାର ଗହଳରେ ଉଦୁଉଦିଆ ଖରାକୁ ମୁଣ୍ଡ ଦେଖାଇ ଦେଇ ସିଝୁଛନ୍ତି ମାତ୍ର । ସେ କ୍ଷୀଣ କରୁଣ ଚିତ୍କାର କରି ଡାକିଲା—

"ହରିଭାଇ···ଭାଇ···!" ପାଖରେ କେହି ନାହାନ୍ତି ।

ଆଖି ମଳି ପୁଣି ଚାହିଁଲା । ଦେଖିଲା, ତା’ର ବସିବା ଜାଗାଟିକ ମୁଣ୍ଡ ରଖି ଦୁଇଟା କଙ୍କାଳ ଶେଷନିଃଶ୍ୱାସ ଛାଡ଼ୁଛନ୍ତି ।

"ହରିଭାଇ···"

ଉତ୍ତର ମିଳିଲା ନାହିଁ ।

ଉଠି ଠିଆ ହୋଇ ଚାହିଁଲା । ଦେଖିଲା କଙ୍କାଳବାହିନୀର ବାରପଣ ଲୋକ ଝାଉଁଳି ପଡ଼ିଲେଣି । କଙ୍କାଳବାହିନୀର ଏ ପରାଜୟରେ ଗୁରୁପାଖର ବିଜୟୀ ଚୌକିଦାରଗଣ ଛତା ଫୁଟେଇ ତଳେ ବସିପଡ଼ିଛନ୍ତି ।

ପୁଣି ଡାକିଲା, "ଭାଇ,···ହେ ହରିଭାଇ !"

କୁଆଡ଼ୁ କିଛି ଉତ୍ତର ଆସିଲା ନାହିଁ ।

ଗୁରୁପାଖେ ଅଗଣିତ ମଡ଼ା, ସେହି ଭିତରେ ଏକ ମଡ଼ା ଉପରେ ବସି ହରିଆ କହିଲା—"ଗଧ !"

କଙ୍କାଳଟି ଆଖି ଫିଟାଇ ଚାହିଁଲା । ହରିଆ ପଚାରିଲା—"ଆଉ କିଏ ?"

"ସମସ୍ତେ ··"

"କାହାନ୍ତି ସବୁ ?"

"ବାଟରେ ।"

"ଏଠାକୁ ଆସୁଛନ୍ତି ?"

"ନା, ଆଉ ଆସିବେ ନାହିଁ । ଆଠ ଦିନ ହେଲା ସେମାନେ ମଲେଣି ।"

"ମଲେଣି ! ସମସ୍ତେ ମଲେଣି ?"

"ହଁ, ବାକି ଅଛି ମୁଁ···।"

ହରିଆ କଙ୍କାଳଟି ଉପରେ ହାତଟା ରଖି ଚିନ୍ତାମଗ୍ନ ହୋଇପଡ଼ିଲା । ଦେଖିଲା, ତା’ ହୃଦୟରେ ଏକ କଙ୍କାଳଟିର ଛାୟା ଆସି ପଡ଼ୁଛି । କି ନିବିଡ଼

ଘନ ଘୁପ୍ପା ସେ ? ସେହି ନବଡ଼ ଘୁପ୍ପା ଭିତରେ ଦୁଇଟି ଆଖି ଜଳଜଳ ଛଳଛଳ ହୋଇ ଘୂରିଁଛି । ଆଉ ବୁକୁର ହାଡ଼ଗୁଡ଼ାକ ଦେଖାଇଦେଇ କହୁଛି—

"ଏହା ଭିତରେ କ'ଣ ଅଛି ଜାଣ ?"

ଏ କହୁଛି—"ହଁ "

ସେ କହୁଛି—"ଜଣକୁ ପାଇବାର ଇଚ୍ଛା । ସେ ଇଚ୍ଛା ପୂର୍ଣ୍ଣ ହେଲା ନାହିଁ ।"

ଏ କ'ଣ କହିବାକୁ ଯାଉଥିଲା । ହଠାତ୍ ଭୂମିକମ୍ପ ହେଲା; ଯେଉଁ ମଡ଼ା ଉପରେ ଏ ବସିଥିଲା ସେଟା ହଲଚଲ ହେଲା ! ଚମକି ଦେଖିଲା ତାହାର ତଳେ ଆହୁରି ଦ' ଘୂରଟା ଲୋକ ଶୋଇଛନ୍ତି ! କଙ୍କାଳମା ଉପରେ ହାତ ପୁଣି ବୁଲାଇଲା । ସେ କଣ୍ଟ କହିଲା ନାହିଁ, କେବଳ ଆଖି ବୁଜି ଦେଇ ପାଟି ପାକୁ-ପାକୁ କଲା ।

ବୈଶାଖର ସୂର୍ଯ୍ୟ ଦେହକୁ ସିଝାଇ ଦେଇ ହାଡ଼ର ଲସା ପରି ଯେଉଁ କେତେ ଟୋପା ଝାଳ ବାହାରିବ ରେ ସାହାଯ୍ୟ କରୁଥିଲା ହରିଆ ତାହା ଆପଣା ଦେହରୁ ପୋଛି କଙ୍କାଳମା ମୁହଁରେ ଦେଇ କହିଲା—"ଗଧି···!"

କଙ୍କାଳମା ଆଖି ଫିଟେଇ କହିଲା—"ଆଉ······।"

ହରିଆ ତାକୁ କୋଳକୁ ଟାଣି ଆଣି କହିଲା—"ଶୁଟେ ଏ ବୁକୁକୁ, ଏହିଠାରୁ ବେଶୀ ଝାଳ ବାହାରୁଛି ।"

ହରିଆ ବୁକୁରୁ ଯେ କେବଳ ଝାଳ ବାହ'ରୁଥିଲା ତାହା ନୁହେଁ, ବୁକୁତଳେ ଏକ ସ୍ପନ୍ଦନର ସ୍ରୋତ ମଧ୍ୟ ବୁହୁଥିଲା । କଣ୍ଠର ପିପାସା ଅପେକ୍ଷା ପ୍ରାଣର ପିପାସା ଅତି ପ୍ରବଳ ଥିଲା । ଦୁଇ ବାହୁତଳେ ସେ କଙ୍କାଳମାକ ଜାକଧଇଲା । କଙ୍କାଳମା ତା'ର ମଳିନ, ରକ୍ତହୀନ, ଶୁଷ୍କ ଅଧରକୁ ବୁକୁପାଖେ ଗୁଞ୍ଜି ଦେଲା । ତା'ର ମନେ ହେଲା ଏହି ଶେଷମୁହୂର୍ତ୍ତରେ ସେ ତା'ର ଶେଷପଦକ କହିଦେଇ ଯିବ—"ଏହି ମଡ଼ାଉପରେ କ ଆମର ବେଘା ହୋଇ ହେଲା ।"

ପଛରେ ଦୁଇ ଘୂରଟା ମଡ଼ା ଉପରେ ପାଦଦେଇ ଘନିଆ ଡାକିଲା— "ହରିଆ ଭାଇ··· ଏ କ'ଣ ?"

ହରିଆ କଙ୍କାଳମାକୁ ସେହିପରି ବୁକୁରେ ଜାକିଧରି ଉତ୍ତର ଦେଲା— "ଏଇ ମୋର ଗଧି ! ଘୂରି କଥା କହୁଥିଲି ବାଟରେ···"

"ହଁ, ତା' ଜାଣେ ।"

"ବର୍ଷକ ତଳେ ଏହାର ସମ୍ବନ୍ଧ···"

ଘନଆ ମୁହଁକୁ ଗମ୍ଭୀର କରି କହିଲା—"ସବୁ ବୁଝିଲି ।"

"ଆଜି ଏ ଏପରି ଏଠାରେ···"

ଘନଆ କିଛି ସମୟ ନୀରବ ରହି ପଚାରିଲା—"ଚୋର ହୁଦା, ପଗଡ଼, ଠେଙ୍ଗା ?"

"ସେସବୁ ଛାଡ଼ିଛି ।"

"ତାହାହେଲେ ତତେ ମଧ୍ୟ ଏଠି ଜଗିବାକୁ ପଡ଼ିବ ?"

"ନା, ଆମ ଦୁହିଁଙ୍କୁ ।"

ଘନଆ ଉପଦେଶ ଦେଲାପରି କହିଲା—"କେଡ଼େ ଅଭାଗା ରେ ତୁ ! ଜାଣି ଜାଣି ଏ ଦଳରେ ମିଶିଲୁ ?" ହରିଆ ବୁକୁତଳେ ଧରିଥିବା କଙ୍କାଳଟିର ମୁହଁଉପରକୁ ଝୁଙ୍କିପଡ଼ି କହିଲା—"ମୁଁ ସବୁ ସ୍ଥାନକୁ ଇ ଖୋଜିବୁଲୁଥିଲି ଭାଇ ! ବର୍ଷକ ତଳେ ବିଭାବେଳେ ଭଆରିବେଳେ ପ୍ରାକୁ ପାଇଥିଲେ ସାଥି ହୋଇ ଆସିଥାନ୍ତି ଏଠିକୁ । ଆଜି ବର୍ଷକପରେ ଏଇଠି ଦେଖାଦେଖି···ଏବେ ହେଲି ଭାଗ୍ୟବାନ୍; ବର୍ଷେ କେବଳ ମଝିରେ ଅଭାଗା ଥିଲି !"

କଙ୍କାଳଟିର କ୍ଷୁଧିତ ଆତ୍ମା ଭିତରେ ଭିତରେ କି ଶାନ୍ତି ପାଇଲା କେଜାଣି, ସେ କହିଲା—"ଚାଲ ।"

"କୁଆଡ଼େ ?"

"ବାହାରକୁ ।"

ହରିଆ ଜଳମଗ୍ନ ବ୍ୟକ୍ତିକୁ କାନ୍ଧେଇଲା ପରି କଙ୍କାଳଟିକୁ କାନ୍ଧେଇ ଠିଆହେଲା । ଘନଆ କହିଲା—"ବସିବାକୁ ହେବ, ବସ, ବସ !" ଆଗରେ ଥିବା ଚୌକିଦାରଗଣ ଠେଙ୍ଗା ଧରି ଠିଆହେଲେ । ସେମାନଙ୍କ ଚାଳ ଉପରେ ଠେଙ୍ଗା ମୁଣ୍ଡି ଦେଖାଗଲା । ପାଟି ଶୁଭିଲା—"ହେଇ—ଇ"

ହରିଆ ବଧିମୁହଁରେ ଲୁହ ଦି' ଧାର ଢାଳି ଦେଇ କହିଲା—"ଏଇଠି ଆମର ବେଢ଼ା, ଆଉ ବାଟ ନାହିଁ ।" ଏତିକି କହି ମୁଁ ନୀରବ ହେଲି । ବନ୍ଧୁ ଉତ୍କଣ୍ଠିତଭାବରେ ରହି ପଚାରିଲେ—"ତା'ପରେ ?"

"ତା'ପରେ···········,

● ● ●

# ରେଙ୍ଗୁନ-ବାହୁଡ଼ା

—୧—

ଗୋପାଳପୁରର କୋଳାହଳମୟ ବେଳାଭୂମିରେ କେଳ ଯେ ତା'ର ସାନପୁଅ ଭଗିଆକୁ କେତେ ବର୍ଷପାଇଁ ବିଦାୟ ଦେଇଯିବ ବୋଲି ଆସିଥିଲା, ଏକଥା ତା'ର ଗାଁ ଲୋକ ଜାଣିଥିଲେ । ଆସିଲାବେଳେ ଶଙ୍ଖାରରେ ସେ ଗାଁଟାକୁ ଫଟାଇଦେଇ ଆସିଥିଲା । ତା' କାନ୍ଦ ଶୁଣି କେତେ ପୁତ୍ରହରା ପଲ୍ଲୀବାସିମାନଙ୍କ ବୁକୁ ଚିପୁଡ଼ି ହୋଇ ଆଖିବାଟେ ଝରଝର ପାଣି ବୋହିପଡ଼ିଲା । କେତେ କଏ ଘନଶ୍ୱାସ ଛାଡ଼ିଲେ କେତେ କଏ ନୀରବରେ କେବଳ ଦୁଆର ମୁହଁରେ ଝୁଙ୍କିରହିଲେ ।

କେଳ ଗୋପାଳପୁର ଆସିବାବେଳେ ହାତରେ ଖଡ଼ୁ, ଗୋଡ଼ରେ ପାହୁଡ଼, ବେକରେ ମାଳି, ନାକରେ ଦଣ୍ଡୀ ଲଗେଇ ଆସିଥିଲା । ତା' ଦେହରେ ସଧବାର ସବୁ ଲକ୍ଷଣ ଥିଲା—କେବଳ ବାସି ପଦ୍ମପରି ତା' ମୁହଁଟି ଶୁଖିଯାଇଥିଲା ।

ଏ ଘଟଣାର ଠିକ୍ ଛଅଦିନପରେ ସେ ଫେରିଯାଇ ପୁଣି ଗାଁରେ ପହଞ୍ଚିଲା । ଆସିଲାବେଳେ ସେ ଯେପରିଭାବରେ ଆସିଥିଲା, ଫେରିଲାବେଳେ ଠିକ୍ ବିପରୀତଭାବରେ ଗଲା । ତାକୁ ଦେଖି କେତେ ଲୋକ କେତେ କଥା ସନ୍ଦେହ କଲେ । ସେତେବେଳେ ତାର ବେକରେ ମାଳି ନ ଥିଲା, ଗୋଡ଼ରେ ପାହୁଡ଼ ନ ଥିଲା, କାନରେ ନୋଳି ନ ଥିଲା କି ନାକରେ ଦଣ୍ଡୀ ନ ଥିଲା । ସଦ୍ୟ ବିଧବାବେଶରେ, ଅଧିକରେ ଖଣ୍ଡିଏ ଧୋବ ନୂଆ ଲୁଗା ପିନ୍ଧି ବେଳବୁଡ଼କୁ ସେ ଯାଇ ଗାଁରେ ଆପଣାର ପୁରୁଣା କୁଡ଼ିଆ ଦୁଆରେ ହାଜର ହେଲା ।

ତାକୁ ଦେଖିଲା ମାତ୍ରେ ଗାଁର ସାଇମାଇପେ ମୁହଁ ଚୂହାଁଚୂହିଁ ହୋଇ ନୀରବରେ କେତେ କଣ କଥାଭାଷା ହେଲେ । ସମସ୍ତେ ବୁଝିଲେ, କେଳର

ସ୍ୱାମୀ ସ୍ଥରବର୍ଷ ହେଲା ତାର ବଡ଼ପୁଅ ରଘୁଆକୁ ଧରି ରେଙ୍ଗୁନ ଯାଇଥିଲା— କଣ ମନ୍ଦ ଖବର ଆସିଲା କି ? ନ ହେଲେ କେଳ ବଧବା ହୁଅନ୍ତା କାହିଁକି ?

କିନ୍ତୁ କେଳର ଢଙ୍ଗଢାଙ୍ଗ ଦେଖି କଏ ହେଲେ ସେତେଦୁର ପାପଚିନ୍ତାକୁ ମନରେ ବେଶୀ ସମୟ ଥାନ ଦେଇପାରିଲେ ନାହିଁ । ତା'ର ବୈଧବ୍ୟ ବେଶ ସଙ୍ଗେ ଚାଲିଚଳନର କିଛି ସମ୍ପର୍କ ନ ଥିଲା । ସେ ହସୁଥିଲା । ତାର ନବଭରଣ ଉଜ୍ଜ୍ୱଳ ଅଙ୍ଗରେ ନୂଆ ଲୁଗା ଖଣ୍ଡିକ ଅଭିନବ ଶୋଭା ପ୍ରକାଶ କରୁଥିଲା ।

ସାଇମାଇପିଙ୍କ ମୁହଁ ଚାହାଁଚାହିଁ ଦେଖି କେଳ ସେମାନଙ୍କ ଆଡ଼କୁ ହସି ହସି ଚାହିଁ କହିଲା, "ଯାହା ହେଇଚି ରାତି ପାଇଲେ ଶୁଣିବ ଗୋ, ରାତି ପାଇଲେ ଶୁଣିବ ।"

ସେଦିନ ରାତିରେ ଗାଆଁର ଲୋକଙ୍କ ଭିତରେ କେତେ ଗୁଜବ ଉଠିଲା । କେଳ ଯେ କୁଳମାନ ଛାଡ଼ି ଆଜି କଣ ହୋଇପାରେ, ଏ କଳ୍ପନା ମଧ୍ୟ କାହା କାହା ମନକୁ ଛୁଇଁଲା । ଗାଆଁର ବୃଦ୍ଧଟିଏ କାନରେ ହାତଦେଇ ଘୋଷଣା କଲେ—"କଳିକାଳ ହେଲା, କଳିକାଳ ହେଲା ! ନ ହେଲେ ମାଇପି ଲୋକ ଏତେ ଉଦ୍ଦବାର୍ଯ୍ୟ ହୁଅନ୍ତେ ନାହିଁ ।"

—୨—

କେଳ ସୁନ୍ଦରୀ । ବୟସ ପଞ୍ଚିଶ୍‌କଣ ବର୍ଷରୁ ଅଧିକ ନୁହେଁ । ତାର ଶେଷ ଯୌବନ କାଳଟା ଏକପ୍ରକାର ନିର୍ବାସନରେ କଟିଗଲା । ବିଭା ହେବାର କେତେ ବର୍ଷ ପରେ ତାର ସ୍ୱାମୀ ବଡ଼ପୁଅ ରଘୁଆକୁ ସାଥିରେ ଧରି, ସେହି ଗୋପାଳପୁର-ଠାରୁ ଜାହାଜ ଚଢ଼ି ରେଙ୍ଗୁନ ଗଲା ଯେ ପାଞ୍ଚ ବର୍ଷ ଭିତରେ ଆଉ କିଛି ଖୋଜଖବର ମିଳିଲା ନାହିଁ; କେବଳ ଯିବାର କେତେ ମାସ ମଧ୍ୟରେ ସେ ଟଙ୍କା ଦଶଟି ମାତ୍ର ପଠାଇଥିଲା । ପାଞ୍ଚ ବର୍ଷ ଭିତରେ ସେହି ଦଶ ଟଙ୍କା ପାଇ ଅନାଥିନୀବେଶରେ କେଳ ନଜର ସଙ୍ଗାଳ ଭଗିଆକୁ ଧରି କିପରି ଯେ ଚଳିଥିବ, ସମସ୍ତେ ଅନୁମାନ କରିପାରିବେ ନାହିଁ ।

କେଳର ସ୍ୱାମୀ ରେଙ୍ଗୁନ ଗଲାବେଳକୁ ତା' ଘର ଖଣ୍ଡିକ ବେଶ୍ ମଜବୁତ୍ ଥିଲା; ମାତ୍ର ଏହି କେତେକ ବର୍ଷ ଭିତରେ କେଳ ସେହି ଘରତଳେ ମୁଣ୍ଡପାତି ରହିଲା; ଅଥଚ ଘରଟି କୁଡ଼ିଆରେ ପରିଣତ ହୋଇଗଲା । ତାର

ଯୌବନମୟ ପ୍ରାଣ ସେହି କୁଟୀରପିଞ୍ଜରା ଭିତରେ ବରାବର ସ୍ୱାମୀର ପଥ ଚାହିଁ-ରହିଲା । ସେହି ଯୌବନ ଘେନି ସେ କେତେ ଲାଞ୍ଛନା, କେତେ ଅପମାନ ଯେ ସହିଛି, କେତେ ରାତି ଯେ କେତେ ଲୁହ ଢାଳିଛି, ସେ କଥା ତାର ସେହି ଚିରସନ୍ତପ୍ତ ଅନ୍ତରାତ୍ମା ଛଡ଼ା ଆଉ କିଏ ଜାଣନ୍ତି ନାହିଁ । ଯେଉଁଦିନ ସେ ପେଟଜ୍ୱାଳାରେ, ଦୁଃଖରେ ଶୋକରେ ସାନପୁଅଟିକୁ ରେଙ୍ଗୁନ ଛାଡ଼ିବାକୁ ଭାବି ବସିଲା, ସେହି ସମୟକୁ ତାର ଭଙ୍ଗା କୁଡ଼ିଆ ଭିତରେ ଏକମାତ୍ର ବାସନ ପଥରକୁଣ୍ଡିଟି ଛଡ଼ା ଆଉ କିଛି ଜିନିଷପତ୍ର ନ ଥିଲା ।

—୩—

ଗୋପାଳପୁରର ବେଳାଭୂମିକୁ ବେଳେବେଳେ ହତଭାଗା ଓଡ଼ିଆ ସ୍ତ୍ରୀ, କୁଲିଙ୍କର ଦୁଃଖମୟ ପୀଠ ବୋଲି କହିବାକୁ ଇଚ୍ଛାହୁଏ । ସେଠାରେ ବିଦାୟ ବେଳର କାହାଣୀ, ସେଠାରେ ମିଳନ ବେଳର ବ୍ୟଥା କେତେ ପ୍ରାଣରେ କେତେ ଭାବାନ୍ତର ଆଣେ । ସେହିଠାରେ—ସେହି ବାଲିଶଯ୍ୟା ଉପରେ ବସି ବର୍ଷ ବର୍ଷ ପାଇଁ କିଏ ପ୍ରିୟ ମାତୃଭୂମିରୁ ବିଦାୟ ନେଇ ଅନନ୍ତ ସମୁଦ୍ର ଭିତରେ ପଶେ; ପୁଣି କିଏ ବର୍ଷ ବର୍ଷ ପରେ—ଦୀର୍ଘପ୍ରବାସ ଶେଷରେ, ଅକୂଳ ସାଗର ଆରପାଖରୁ ଫେରିଆସେ ! ସେଠାରେ ଦିନ ଦିନ ମାସ ମାସ ବର୍ଷ ବର୍ଷ ହୋଇ ଦରିଦ୍ର ମାନବ ଚକ୍ଷୁରୁ ଯେତେ ଲୁହ ଝରେ, ତାହା ସେହି ବାଲୁକା ଭୂମିରେ କୁଆଡ଼େ ଲୀନ ହୋଇଯାଏ; ହୃଦୟର ଚିତ୍କାର ସାଗରର ଗର୍ଜନତଳେ ଲୁଚିଯାଏ । ପେଟବିକଳରେ ଓଡ଼ିଆ କୁଲି ସେଠାରେ କାଟପିଟୁଳାପରି ଯିବା ଆସିବା କରେ ।

କେଳି ଏହିପରି ଗୋପାଳପୁରକୁ ପୁଅକୁ ବିଦାୟ ଦେବାକୁ ଗଲା । କେତେ ଦୁଃଖ-କଷ୍ଟରେ ପଡ଼ି, ପରର ଧାନ କୁଟି, ପାଣି ବୋହି ସେ ପୁଅକୁ ପାଳିଥିଲା ଏବଂ ନିଜର ଆରାଧ୍ୟଙ୍କ ମଙ୍ଗଳକାମନାରେ ମୁଣ୍ଡର ସିନ୍ଦୂର ସହିତ ଦେହର ଅଳଙ୍କାରତକ ଏତେ କାଳ ସଜୀବ ରଖିଥିଲା । ତାର ଯୌବନ ସଙ୍ଗେ ସେହି ଅଳଙ୍କାରସବୁ ଯେପରି ଜୀବନ ପାଇ ଖେଳୁଥିଲେ । ସେ ଦିନ ସେହି ବେଳାଭୂମିରେ ବସି ନିଜର କାତର କରଯୁଗଳରୁ ଅଳଙ୍କାରଗୁଡ଼ିକ ଖୋଲିବାକୁ ଲାଗିଲା । ପୁଅକୁ ପାଖରେ ବସାଇ ମନେମନେ ବିଚାରିଲା—"ଯାଉ, ଅଳଙ୍କାରତକ ଯାଉ । ମନରେ ଥିଲେ କିଣ ନାହିଁ; ଖାଲି ଏଇ ଅଳଙ୍କାରରେ ଅଛି ?

ପୁଅ କହୁଥିଲା—"ମାଆର ଏହି ଅଳଙ୍କାରତକ ବିକି ସମୁଦ୍ର ଆରପାଖକୁ ଯିବ । ସେଠାରେ ବାପଭାଇଙ୍କ ଭିତରୁ କାହାକୁ ହେଲେ ତ ଜଣକୁ ଦେଖିବ । ଓହୋ ! କେତେ ବାଟ ସେ—କାହିଁ—କେଉଁଆଡ଼େ ଯିବ !"

ମାଏ ଏଣେ କେଳି ଭାବୁଥିଲା ଅନ୍ୟକଥା । ତାର ସେ 'ସାତ ସମୁଦ୍ର ତେର ନଈ ଆରପାଖର' ସେହି କାହାଣୀ କଥା ମନେପଡ଼ୁଥିଲା । ମନେପଡ଼ିଲା ତା'ର ପ୍ରଥମ ଯୌବନ । କାନରୁ ଟନାଳ କାଢ଼ିଲା । ମନେପଡ଼ିଲା, ସେହି କାନରେ ସେହି ନୋଳଗଣ୍ଡାକ ତାର ଆଗ୍ରହ ପିନ୍ଧାଇ ଦେଇ କେତେ ଆଦରରେ କଥା କହୁଥିଲେ ।

ତା'ପରେ କାଢ଼ିଲା ନାକର ଦଣ୍ଡୀ । ସଙ୍ଗେସଙ୍ଗେ ତା'ର ମନେପଡ଼ିଲା, କେତେ ବର୍ଷତଳର ସ୍ମୃତି । ଆଖିରୁ ଲୁହ ବୁହେ-ନ-ବୁହେ ହେଲା ।

ବେକର ମାଳଟା କାଢ଼ୁଛି, ହାତ ସ୍ଥିର ରହିଗଲା । ଯେଉଁ ବର୍ଷ ଗାଇଜରେ ମରୁଡ଼ି ପଡ଼ିଥିଲା, ସେହି ବର୍ଷ ସ୍ୱାମୀ ତାର ଧାନ ଦୁଇ ଭରଣ ବିକି ମାଳଟିକି କିଣିଥିଲେ ।

ମାଆର ମୁହଁକୁ ଚାହିଁ ଭଗିଆ ପାଟିକଲା—"ମାଆ !"

ମା' ତାର ଚମକି ପଡ଼ି କଣ କହିବାକୁ ଚେଷ୍ଟା କଲା; ମାଏ ପାଟିରେ କଥା ନ କହି ଆଖିରୁ ଲୁହ ଢାଳିଦେଲା ।

ଭଗିଆ ବୁଝିଲା ଅନ୍ୟପ୍ରକାର । ତାର ବିଦାୟରେ ମାତୃହୃଦୟ ତରଳିଯିବା ସ୍ୱାଭାବିକ; ମାଏ ତା'ଠାରୁ ଜଟିଳ ଭାବନାରେ ଯେ ସେ ବହିହେଉ-ଥିଲା, ଭଗିଆ କଳ୍ପନା କରିପାରିଲା ନାହିଁ ।

—୪—

କେଳିର ଦେହରେ ଖଣ୍ଡିଏ ମଇଳା ଲୁଗା—ସାତ ଠା' ଦୋସିଆ ହୋଇଛି । ଅଳଙ୍କାରତକ ନାକରୁ, କାନରୁ, ବେକରୁ କାଢ଼ିଦେଇ ସେ ପୁଅ ହାତକୁ ବଢ଼ାଇଦେଲା । ସଙ୍ଗେ ସଙ୍ଗେ ପୁଅ ଭଗିଆ ସେତକ କାନରେ ବାନ୍ଧି ମିସ୍ତ୍ରୀ ପାଖକୁ ଚାଲିଲା । ଏଣେ କେଳି କେବଳ କାତର ଦୃଷ୍ଟିରେ ସମୁଦ୍ରଆଡ଼କୁ ଚାହିଁ କେତେବେଳେ ଲୁହ ପୋଛୁଥିଲା, କେତେବେଳେ ମୁହଁ ପୋଛିଲା ।

ସେ ଦିନ ମଙ୍ଗଳବାର—ଜାହାଜପାଳ । ଲୋକେ ଜାହାଜରେ ଚଢ଼ିବେ ଏବଂ ରେଙ୍ଗୁନ-ଫେରନ୍ତା ଯାତ୍ରୀ ଜାହାଜରୁ ଓହ୍ଲାଇବେ । କୋଳାହଳରେ ସମୁଦ୍ର ଗର୍ଜ୍ଜନ ବାରିହେଲା ନାହିଁ ।

କିଏ ଯାତ୍ରୀ କୁଆଡ଼େ ଯିବେ । କିଏ କେତେ ଗାଁର ନାଁ ଧରି ଡକାଡକିହେଲେ । ଯାତ୍ରୀଗଣ ଜାହାଜରୁ ଓହ୍ଲାଇ କୂଳରେ ପହଞ୍ଚିଲେ । କାହାର ଶବ୍ଦ ଶୁଭିଲା—ବଶ୍ୱାଳ ଭାଇ, ଜଗନ୍ନାଥପୁର । ଆଉ କିଏ ତା ପଛରେ ଡାକଦେଲା—ରଣପୁର । କାହାର ପାଟି ଶୁଭିଲା—'ଖଲ୍ଲିକୋଟ, ଚଣ୍ଡିପେଡ଼ ।' କିଏ କହିଲା ଖୋରଧା, ଜଡାରସିଂ ।' ଏହିପରି ଚହଳ ଭିତରେ କାହାର ଚିତ୍କାର ଉଠିଲା—"ବାଣପୁର ବାଣପୁର !" କେଳି ଚମକି ରଘୁଆକୁ ଚାହିଁଲା । ଜୀବନର ବର୍ଷ ବର୍ଷ କାଳ ଏହିପରି ସେ କେତେ ଚମକିଛି । ଗାଁଦାଣ୍ଡରେ କେହି ଜଣେ ରେଙ୍ଗୁନ-ଫେରନ୍ତା ଗଲେ ସେ ଆଗ୍ରହ ଓ ଆଶଙ୍କାରେ ସେ ଲୋକଆଡ଼କୁ ଚାହିଁଛି—କାଳେ ଲୋକ କିଛି ମନ୍ଦ ଖବର କହିଯିବ କି ! ରେଙ୍ଗୁନ-ବାହୁଡ଼ା କିଏ କେବେ ଦୁଆରେ ଡାକଦେବ ବୋଲି ଘଣ୍ଟ ଘଣ୍ଟ କାନେଇଛି । ଡାକପିଅନ ଗାଁକୁ ଆସିଲେ ସତୃଷ୍ଣନୟନରେ ଦୁଆରରୁ ତାକୁ ଲକ୍ଷ୍ୟ କରିଛି ।

ଗୋପାଳପୁରରେ ବାଣପୁର ନାଁ ଶୁଣି ସେ ଚମକିବା କଥା । ସଙ୍ଗେ ସଙ୍ଗେ ଶବ୍ଦ ପୁଣି ଶୁଭିଲା—ପାଖକୁ ପାଖକୁ ଶୁଭିଲା—"ବାଣପୁର, ବାଣପୁର ଯିବାବାଲା କୁଆଡ଼େ ଗଲ ହୋ !"

ଏହି ସମୟରେ ଭଗିଆ ଖଣ୍ଡେଦୂର ଆସି, ଟଙ୍କା କେତୋଟି ହାତରେ ମୁଠା କରି ଧରି ସେଇ ଲୋକ ପଛେ ପଛେ ଯାଇ ପଚାରିଲା—"ହଁ, ବାଣପୁର —ବାଣପୁର ।" ତାପରେ ତାର ମୁହଁକୁ ଚାହିଁ କହିପକାଇଲା—"କିଏ, ଭାଇ !"

ରଘୁଆ ଥମଥମ ହୋଇ ଠିଆ ହୋଇ ପଚାରିଲା—"କିରେ ଭଗିଆ, ତୁ କୁଆଡ଼େ ?" ଏତିକି କହି ଜାକିପକାଇଲା ।

— ୪ —

ରଘୁଆ କହିଲା—"ମା, ଭଗିଆକୁ ଆଗରେ ଚଳେଇ ଷ୍ଟେସନକୁ ଚାଲ ।"

କେଳିର ଆନନ୍ଦର ସୀମା ନାହିଁ । ବଡ଼ପୁଅ ଫେରିଛି । ସ୍ୱାମୀ ଆସିବେ ମାଘ ମାସରେ । ଆଉ ଦୁଃଖ କିଣ ? ଅଳଙ୍କାରଯାକ ଯାହା ବିକା ହୋଇଛି ତା'

ପାଇଁ ଆଜି ସେ ଭାବିଲା ନାହିଁ । ମଣିଆମନ୍ଦୀ ଲୁଗା ଖଣ୍ଡି ଛାଡ଼ି ରଘୁଆ ଆଣିଥିବା ଧୋତି ଲୁଗା ଖଣ୍ଡିଏ ପାଲଟିପକାଇଲା । ତା'ପରେ ଚାଲିଲା ଗାଡ଼ିକି ।

କେଳି ଯେତେବେଳେ ନିଜ ଗାଁରେ ଯାଇ ପହଞ୍ଚିଲା, ସେତେବେଳକୁ ଅନ୍ଧାର ମାଡ଼ିଆସୁଥିଲା ।

ପଛରେ ରଘୁଆ ଆଉ ଭଗିଆ ତିନି ମହଣ ଓଜନର ଗୋଟେ ବାକ୍ସ, ଗୋଟେ ପୁରୁଣି ଅଖା ବୋଝ ମୁଣ୍ଡେଇ ଆସୁଥିଲେ । କେଳିକୁ ଆନନ୍ଦରେ ଆଜି ବାଟ ଦିଶୁ ନ ଥିଲା । ସେ ସିଧା ସିଧା କୁଡ଼ିଆ ଭିତରକୁ ପଶିଗଲା ।

ତା ଆରଦିନ ସକାଳେ ଭେଣ୍ଡିଆ ଯୁଆନ ରଘୁଆ କାନରେ ବାଡ଼ିଆ ନୋଳି ଲଗାଇ ଖଣ୍ଡେ ଚୁନପଟ ବଟୁଆ କାଖରେ ଜାକି ଦାଣ୍ଡକୁ ବାହାରିପଡ଼ିଲା । ଆଜି କେଳି ତାର ପୂର୍ବ ଶୋଭାକୁ ଶତଗୁଣ ବଢ଼ାଇଦେଇ ରେଙ୍ଗୁନ ଦଣ୍ଡୀ, ନୂଆ କାଚ, ହଳଦିଆ ଶାଢ଼ୀରେ ମଣ୍ଡି ହୋଇ ସାଇମାଇପିଙ୍କ ଗହଳିରେ ବାଡ଼ିପରେ ଘୋଷଣା କରିଦେଲା ଯେ ତାର ପୁଅ ରଘୁଆ ରେଙ୍ଗୁନରୁ ଫେରିଛି; ଘରଲୋକ ଆଉ ଚାରିମାସପରେ—ମାଘମାସକୁ ଫେରିବେ ।



# ବିଧବାର ନିଃଶ୍ୱାସ

କଥାଟା ଶୁଣି ଗୋବିନ୍ଦର ମୁହଁ ଶୁଖିଗଲା । ସେ କ୍ଷୀଣ ସ୍ୱରରେ କହିଲା, "ମୁଁ ଯେତେବେ···।" ତା ମୁହଁରୁ କଥା ବାହାରୁ ନ ବାହାରୁ ମାଧବ କହିଲା, "ମୁଁ ତୁମକୁ ଦୋଷ ଦେଉ ନାହିଁ, ଗୋବିନ୍ଦ ! ଏ ଦୋଷ ମୁଁ ନିଜ ସମାଜ ମୁଣ୍ଡରେ ଦେଉଛି । ଜାନ, ପଥରର ଭଗବାନ୍ ଏ ଜାତିକି ଯେ କି ଅଭିଶାପ ଦେଇଛନ୍ତି ବୁଝି ହେଉ ନାହିଁ । ଯେଉଁ ସମାଜରେ ଦୟା-ମାୟା ନାହିଁ, ପରର ଯାତନା ଦେଖିଲେ ଯେଉଁ ସମାଜ ପଥର ବୁକୁରେ ତାହା ସହି ତାକୁ ପୁଣି ପଦାଘାତ କରିପାରେ, ନମସ୍କାର ମୋ ସମାଜକୁ । ସମାଜର ପୁରୋହିତଗଣ ପୋଥିରୁ ଡୋର ଫିଟାଇ ମନ୍ତ୍ର ବାଛୁଦେଲାବେଳେ ଅବଳାର ଏ କରୁଣ କାହାଣୀ କି ତାଙ୍କ କାନକୁ ଶୁଭେ ନାହିଁ ? ଛିଃ, ଗୋବିନ୍ଦ, ଛିଃ ଏ ସମାଜକୁ ! ରମ ନାମାର ମୃତ୍ୟୁ ଘଟଣା ଦେଖି ମୁଁ ଏ ସମାଜତ୍ୟାଗୀ—ଦେଶତ୍ୟାଗୀ ହୋଇଯିବାକୁ ଇଚ୍ଛା-କରୁଛି । କେଉଁ ହୃଦୟବାନ୍ ବ୍ୟକ୍ତି ଏହା ଦେଖି ଧୈର୍ଯ୍ୟ ଧରି ରହିପାରିବ ? ମନୁଷ୍ୟ ହୃଦୟ କି ଏତେ ନିଷ୍ଠୁର ହୋଇପାରେ ? ମନୁଷ୍ୟ କି ଏତେ ପତିତ ହୋଇପାରେ ଯେ ତା' ମୁହଁରେ ପାଣି ଟୋପାଏ ଦେଲେ ମନୁଷ୍ୟକୁ ପାପ ଛୁଏଁ ? ଏପରି ସମାଜଠାରୁ ପଶୁସମାଜ ଭଲ ଗୋବିନ୍ଦ !"

ଗୋବିନ୍ଦ ଆଉ କିଛି କହିପାରିଲା ନାହିଁ । ତା' ଆଖି ଦୁଇଟି ଛଳଛଳ ହୋଇଆସିଲା । ହୃଦୟଟା ତା'ର କମିତି ଅବଶ ବୋଧ ହେଲା । ସେ ବେଶୀ ସମୟ ଠିଆ ହୋଇ ନ ପାରି ସେହି ସ୍ଥାନରେ ଥକାମାରି ବସିପଡ଼ିଲା ।

ଜଙ୍କିଆ ଥାନା ଗୋଲବାଇ ଶାସନ ରମାନାମାର ଘର । ଗାଁଟି ବ୍ରାହ୍ମଣ ଗାଁ, ଘର ପଚିଶ ହେବ । ସେ ଗାଁର ମହାଜନ ରଘୁ ମିଶ୍ରଙ୍କ ଘରେ ରମାନାମା ଜନ୍ମ ହୋଇଥିଲା । ରଘୁ ମିଶ୍ରେ ରମାନାମାର ସହୋଦର ଭାଇ ଅଟନ୍ତି । ରମା-ନାମାର ପିତା ଅନାମଙ୍କ ନାଁ ଖୋରଧା ଅଣୀ କୋଣରେ ଜଣା । ବୈଦ୍ୟପଣରେ ସେ ଧନ୍ୱନ୍ତରିଙ୍କୁ ହଟାଇଦେବାବାଲା । ବଳରେ ତାଙ୍କ ସମାନ ଆଉ ଜଣେ କଏ

ନ ଥିଲେ । ସେ ଗୁଣରେ ଯେପରି ବଡ଼ ଥିଲେ, ରୂପରେ ମଧ୍ୟ ସେହିପରି ସୁନ୍ଦର ଥିଲେ । ଖାଲି ସେତିକି ନୁହେଁ—ରୂପ, ଗୁଣ, ସମ୍ପତ୍ତି ସଙ୍ଗେ ଗୋଟିଏ ପୁତ୍ର-ସଂପଦ ମଧ୍ୟ ପାଇଥିଲେ । ରମାନାମୀ ତାଙ୍କର ଏକ ମାତ୍ର କନ୍ୟା ସନ୍ତାନ; ତେଣୁ ସେ ତାକୁ କୋଳର ସଙ୍ଗାଳି ପରି ପାଳିଥିଲେ ।

ରମା ବାପାଙ୍କର ବେଶୀ ଆଦର-ଯତ୍ନ ପାଇଥିଲା; କାରଣ ସେ ଶାନ୍ତ ଏବଂ ଜାଣ୍ଡୀ । ଭଗବାନ୍ ଯେ ତାକୁ ଏପରି କାହିଁକି କରି ସଂସାରକୁ ପଠାଇଥିଲେ, ତାହାଦ୍ୱାରା ଯେ ତାଙ୍କର କି ଉଦ୍ଦେଶ୍ୟ ସାଧିତ ହବାର କଥା ଥିଲା, ସେହି କେବଳ ଜାଣନ୍ତି । ମାତ୍ର ଲୋକେ ଜାଣିବାକୁ ରମା ସଂସାରରେ ବହୁ କଷ୍ଟ-ଯାତନା ଭୋଗିବାକୁ ଆସିଥିଲା । ସେକଥା ଭାବିଲେ ଏ ଦେହ ଶୀତେଇ ଉଠୁଛି ।

ରମା ଯେ ସୁଖ ପାଇ ନ ଥିଲା ଏପରି ନୁହେଁ; ମାତ୍ର ତା ସୁଖଟା ପାଣି-ଫୋଟକା ପରି ଦୁଇ ଦିନରେ ଉଭେଇ ଯାଇଥିଲା । ଜହ୍ନିଫୁଲ ପରି ଦିନରେ ଫୁଟି ଦିନରେ ମଉଳି ପଡ଼ିଥିଲା । ସେତେବେଳକୁ ତାକୁ ଆଠ ବର୍ଷ ବୟସ । ସେ ସୁଖ-ଦୁଃଖ କଣ ଜାଣେ ନାହିଁ, କଥା କଣ ବୁଝେ ନାହିଁ । ତାକୁ ଡାକିଲେ ଶୁଭେ ନାହିଁ, କଷ୍ଟ ଦେଲେ ସେ ଜାଣିପାରେ ନାହିଁ । ଏପରି ଅବସ୍ଥାବେଳେ ଆଉ ଜଣଙ୍କ ଭାଗ୍ୟ ସଙ୍ଗେ ତା ଭାଗ୍ୟକୁ ବାନ୍ଧିଦିଆଗଲା । ଏଟାକୁ ସମାଜରେ ବିବାହ-ବନ୍ଧନ କହନ୍ତି । ଏ ବିବାହ ଯେ କାହିଁକି ହେଲା ସେ ବୁଝିପାରିଲା ନାହିଁ । ଭଗବାନ୍ ତାକୁ ବୁଝିବାକୁ ଶକ୍ତି ଦେଇ ନ ଥିଲେ । ସେ ଚଳତ୍‌ଶକ୍ତିହୀନ ଖଣ୍ଡିଏ କାଠପରି ଜଗତ୍‌ସ୍ରୋତରେ ଭାସି ଭାସି ଆସି ଅନାମ ମିଶ୍ରଙ୍କ କୂଳରେ ଲାଗିଥିଲା । ଅନାମ ତାକୁ ସମାଜର ପୋଥିଗତ ନରଗଡ଼ା ମାନ୍ତ ସଙ୍ଗେ ଗୁଡ଼ାଇ ଭୁଡ଼ାଇ ଆଉ ଏକ ସ୍ଥାନକୁ ଫିଙ୍ଗିଦେଲେ । ସେ ଦେଖିଲେ ନାହିଁ ଯେ, ସେ ସ୍ରୋତ ବହୁଛି ନା ସ୍ଥିର ଅଛି, ସେ ବନ୍ଧ ପୁଷ୍କରଣୀ କି ଗତିଶୀଳ ଜଳଧାରା । ତାଙ୍କର ପିତୃ-କର୍ତ୍ତବ୍ୟ ସେ ସେତିକରେ ଶେଷ କଲେ ।

ବିବାହ ହେବାର ଛ' ମାସ ମଧ୍ୟରେ ରମାର ଭାଗ୍ୟରେ ବଜ୍ର ପଡ଼ିଲା; ମାତ୍ର ସେ ବଜ୍ରର ଆଘାତ ସେ ସେତେବେଳେ ଜାଣିପାରିଲା ନାହିଁ । ତାକୁ ଯେ ବିଧବା ହେବାକୁ ହେଲା, ସେଟା ତା'ର ସୁଭାଗ୍ୟକୁ କି ଦୁର୍ଭାଗ୍ୟକୁ ସେ ବୁଝିପାରିଲା ନାହିଁ । ଖାଲି ଦେଖିଲା, ନନା କାନ୍ଦିଲେ, ବୋଉ କାନ୍ଦିଲେ, ସାଇପଡ଼ିଶା ଲୋକ କାନ୍ଦିଲେ । ଆଉ, କେହି କେହି ଆସି ତା ଦେହରୁ ଅଳଙ୍କାରଗୁଡ଼ିକ କାଢ଼ି ନେଲେ । ଅଳଙ୍କାର କାଢ଼ିଲାବେଳେ ସେ ତାହା ନ ଦେବାକୁ ବହୁଚେଷ୍ଟା

କରିଥିଲା; ମାତ୍ର ପାରିଲା ନାହିଁ । ଭଗବାନ୍‌ଙ୍କ ନୀତିଠାରୁ ତା'ର ସମାଜର ନୀତି ଯେ ଆହୁରି କଠୋର, ସେ ଜାଣି ନ ଥିଲା ।

ଏହିଠାରୁ ରମାର ଦୁଃଖର ଜୀବନ ଆରମ୍ଭ ହେଲା । ସେ ବିଧବା ହେବାର ଛ' ମାସପରେ ଅନାମ ଜ୍ୱରରେ ପଡ଼ି ଦୁଃଖରେ ଅନୁତାପରେ ପ୍ରାଣ ଛାଡ଼ିଲେ । ସେ ଜାଣି ଜାଣି ଯେ କୋଳର ସଙ୍ଗାଳ ରମାକୁ ଚତୁର୍ଥପକ୍ଷ ବର ସଙ୍ଗେ ବିବାହ ଦେଇ ପିତୃ-କର୍ତ୍ତବ୍ୟ ଶେଷ କରିଥିଲେ, ସେଥିପାଇଁ ତାଙ୍କୁ ସେତେବେଳେ କିପରି ଅନୁତାପ କରିବାକୁ ପଡ଼ିଥିଲା, ତାହା ତାଙ୍କ ମୁଖଭଙ୍ଗିରୁ ଜଣାପଡ଼ୁଥିଲା । ବର୍ତ୍ତମାନ ତାଙ୍କ ଆତ୍ମା ଯେ ରମା କଥା ଭାବି ସୁଖରେ ଥିବ, ଏହା କୁହାଯାଇ ନ ପାରେ ।

ବର୍ଷ ଏକ, ଦୁଇ, ତିନ, ଚାରି ବିତିଗଲା—ରମାର ସେହି ବିଧବା ଅଙ୍ଗରେ ଯୌବନ-ଶ୍ରୀ ଫୁଟିଲା । କ୍ରମେ ସେ କାଚ, ମାଛ, ନାଲି ଶାଢ଼ୀ ଛାଡ଼ିଲା । ତା' ସ୍ନେହ-ସୁଖର ଅଧାର ବୋଉକୁ ଛାଡ଼ିଦେଲେ ଘରେ ତା'ର ଆପଣାର ହୋଇ କେହି ନ ଥିଲେ । ଭାଇ ଥିଲେ, ଭାଉଜ ଥିଲେ, ପୁତୁରାମାନେ ଥିଲେ; ମାତ୍ର ସମସ୍ତଙ୍କ ଚକ୍ଷୁକୁ ସେ ଶୂନ ହୋଇଥିଲା ।

ଏ ସମାଜରେ ବିଧବା-ନିର୍ଯ୍ୟାତନା କଥା କିଏ ନ ଜାଣେ ? ଶୁଭବେଳେ ବିଧବାକୁ କିଏ ଚାହିଁବେ ନାହିଁ, ଅନୁକୂଳବେଳେ ସେ ବାଡ଼ିପଛ କୋଣରେ ଲୁଚିବା କଥା । ବିବାହିତ ସମୟରେ ପଛରେ ରହିବା ଲୋକ । ସମାଜର ପ୍ରବୀଣ ପୁରୋହିତମଣ୍ଡଳୀ ଏହିପରି କେତେଗୁଡ଼ିଏ ନୀତି ବାନ୍ଧିଯାଇଛନ୍ତି । ଏହା ବିଧବା-ଜୀବନକୁ ସମାଜରେ ପଶୁଜୀବନଠାରୁ—ପତିତ୍ୟକ୍ତ ଜୀବନଠାରୁ ଆହୁରି ହୀନ, ଲାଞ୍ଛିତ କରିଦେଇଛି !

ରମାର ସଂସାର ଛାରଖାର ହୋଇଗଲା ସତ, ସଂସାର ତାକୁ ଘୃଣା, ଅବଜ୍ଞା, ତାଚ୍ଛଲ୍ୟ ଚକ୍ଷୁରେ ଦେଖୁଥିଲା ସତ, ମାତ୍ର ରମା କାହାକୁ ସେହିପରି ଦେଖିବାକୁ ଶିଖି ନ ଥିଲା । ସେ କାହାର କଥା ବୁଝିପାରୁ ନ ଥିଲା ସତ, ମାତ୍ର କିଏ ବିରକ୍ତ ହେଲେ ବା ଖୁସି ହେଲେ ସେ ମୁଖଭଙ୍ଗିରୁ ଜାଣିପାରୁଥିଲା । ଲୋକେ କଥା କହି ଯେ ଭାବ ବ୍ୟକ୍ତ କରିପାରନ୍ତି, ସେ ଆଖିରେ, ମୁହଁରେ, ହାତରେ ଠାରି କରି ମଧ୍ୟ ତାହା କରିପାରୁଥିଲା ।

ଗୋଳବାଇ ଗ୍ରାମର ପାଞ୍ଚ ବର୍ଷର ପିଲାଠାରୁ ଅଶୀ ବର୍ଷର ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ସମସ୍ତେ ରମାନାମକ ଜାଣନ୍ତି । ବିଶେଷରେ ପିଲମାନେ ତା' ଠାରୁ

ଦେଖିବାପାଇଁ ତାକୁ ନାନା କଥା ପଚ୍ଚରନ୍ତି । ରମାନାମ୍ନା କାହା ଗାଲ ଛୁଇଁ, କାହା ପିଠି ଆଉଁସି ଆଉଁସି ମୂକଭଙ୍ଗି କରି ସବୁକଥା ବୁଝାଇଦଏ । ପର ଆପଣା କଣ ସେ ତାହା ଜାଣି ନ ଥିଲା । ତେଣୁ ସେ ସମସ୍ତଙ୍କ ଘରକୁ ଅବାଧରେ ଯାଉଥିଲା, କାହା ପିଲାକୁ ଖୁଆଇ ଦେଉଥିଲା, କଏ ଅଳି କଲାବେଳେ ତାକୁ କାଖେଇ ବୁଲୁଥିଲା । ତା'ର ସକାଳୁ ସଂଧ୍ୟାଯାଏ ଏଇ ବ୍ୟବସାୟ ହୋଇଥାଏ । ଖାଲି ଏତିକି ନୁହେଁ, ରମାନାମ୍ନାର ପାଟିରୁ କଥା ବାହାରୁ ନ ଥିଲା ସତ; ମାତ୍ର ପରର ଦୁଃଖ-କଷ୍ଟ ଦେଖିଲେ ତା' ଆଖିରୁ ଝରଝର ହୋଇ ଏତେ ଲୁହ ବାହାରୁଥିଲା, ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ସେ ବାଟରେ ଗଲାବେଳେ କେତେ ଦୁଷ୍ଟପିଲା ତାକୁ ଚିଡ଼େଇବାପାଇଁ ତା' ଉପରକୁ ବାଲି ଫିଙ୍ଗନ୍ତି; ମାତ୍ର ସେ ସେଥିକି ନ ଚାହିଁ ଯେ ବାଲି ଫିଙ୍ଗୁଥାନ୍ତି ତାଙ୍କ ଉପରୁ ବାଲି ଝାଡ଼ିଦେବାପାଇଁ କୋଳେଇ ପକାଏ—ଗାଲରେ ଚୁମ୍ବନ ଦେଇ, ପିଠିରୁ ଧୂଳି ଝାଡ଼ିଦେଇ କାଖେଇ ପକାଏ । ତା' ଦେହରେ ଥିବା ଧୂଳିକି ସେ ଚାହେଁ ନାହିଁ ।

ରମାନାମ୍ନାର ଏ ଢଙ୍ଗଢାଙ୍ଗ ବେଶୀ ଦିନ ଚଳିଲା ନାହିଁ । ଗାଁରେ ତା-ନାଁରେ ଦୁର୍ନାମ ଉଠିଲା ଯେ ସେ ଶତପଥୀଙ୍କ ଘରେ ପିଲାଙ୍କୁ କାଖୋଉଛି, ରଥଙ୍କ ଘରେ ରୋଗୀସେବା କରୁଛି ଏବଂ ମହାପାତ୍ରଙ୍କ ଘରଲୋକଙ୍କ ସଙ୍ଗେ ମିଳାମିଶା କରୁଛି । ଶତପଥୀ, ରଥ, ମହାପାତ୍ର ବଂଶ ସଙ୍ଗେ ମିଶ୍ର, ଷଡ଼ଙ୍ଗୀ ବଂଶର ପଡ଼େନାହିଁ । ପନ୍ଦର ବର୍ଷତଳେ ଗାଁର କୋଠଭୋଗ ବଣ୍ଟା ହେଲାବେଳେ ସେମାନେ ଫାଳେ ଆମ୍ବ ଭୁଲରେ ଅଧିକା ନେଇଯାଇଥିଲେ ବୋଲି ଗାଁର ବିବାଦ ହୋଇଥିଲା । ସେହି ଦିନାବଧି ଏ ପର୍ଯ୍ୟନ୍ତ ଗାଁରେ ଦୁଇ ଦଳ ହୋଇ ରହିଛନ୍ତି । ଏକ ପକ୍ଷର ଲୋକ ଅନ୍ୟ ପକ୍ଷର ଲୋକଙ୍କୁ ମୁହାଁମୁହିଁ ଚାହାନ୍ତି ନାହିଁ । ଏପରି ସ୍ଥଳେ ରମାନାମ୍ନା ଯେ ସେମାନଙ୍କ ଘରକୁ ଅବାଧରେ ଯିବାଆସିବା କରେ, ଏକଥା ବୟୋବୃଦ୍ଧ କେତେ ଜଣ ଗ୍ରାମପଣ୍ଡିତଙ୍କ ଆଖିରେ ଗଲା ନାହିଁ । ସେମାନେ ମିଶ୍ରବଂଶକୁ ବାସନ୍ଦ କରିବସିଲେ । ଭାଇ ରଘୁ ମିଶ୍ରେ ବିଚାରିଲେ ଯେ କେବଳ ରମା ଯୋଗୁ ଏତେ ବିପଦ । ତେଣୁ ଦିନେ ସେ ରମାକୁ ସେଆଡ଼େ ନ ଯିବାକୁ ମନାକଲେ । ରମାନାମ୍ନା ସେ ମନାର ଅର୍ଥ କିଛି ବୁଝିଲା ନାହିଁ । ଗୋଟେ ହିଧୁ'ମ ପାଟି କରି ଚାଲିଗଲା । ମିଶ୍ରେ ରାଗରେ ଗରଗର ହୋଇ ଘରେ ରହିଲେ ।

ଜାଡ଼ୀ, କାଲୁଣୀ, ଖମ୍ବା ରମାନାମ୍ନା ବର୍ତ୍ତମାନର ଖଳ, ପରଘରବୁଡ଼ା, ବାରକାନକୁହା ସମାଜପଣ୍ଡମାନଙ୍କର ସମାଜମଣ୍ଡଳତତ୍ତ୍ୱ ବୁଝିବ କୁଆଡ଼ୁ ? ରମା-

ନାମାର ଅକପଟ ହୃଦୟ ଯୋଗୁଁ ଗାଁ ଯେ ଘରଖାର ହୋଇଯାଉଛି, ଏ କଥା ସମାଜରେ କଥାଁ ପରି ଜଳଉଠିଲା । ଘୋଡ଼ା ସଇସ ଘୋଡ଼ାର ବାଗ ହାତରେ ଧରି ଘୋଡ଼ା ନେଲା ପରି ରଘୁ ମିଶ୍ରେ ଜାତର ବାଗଟା ସବୁବେଳେ ହାତରେ ଧରିଥାଆନ୍ତି । ମାତ୍ର ଏହା କରିବାହାରା ଯେ ସେ ଘୋଡ଼ା ଧରିବା ବ୍ୟବସାୟ ଛଡ଼ା ଘୋଡ଼ାରେ ବସିବା ଜାଣନ୍ତି ନାହିଁ, ଏ କଥା ସେ ଜାଣିପାରୁ ନ ଥିଲେ । ସେ ରମାନାମା ଉପରେ ଖୁବ୍ ସତର୍କ ଦୃଷ୍ଟିଦେଲେ । ତା' ଉପରେ ନର୍ଯାତନା ଆରମ୍ଭ ହେଲା । ଘରେ ତାକୁ କେହି ସୁଖପାଇଲେ ନାହିଁ । ଭଲ କରି ଖାଇବାକୁ ଦେଲେ ନାହିଁ । ଖାଲି ଏତକ ନୁହେଁ, ଭାଉଜର ଗୁଣ୍ଡ୍ଶୀମୁଣ୍ଡା ଏବଂ ଭାଇ ପୁତୁରଙ୍କ ବଧା ସ୍ବପୁଡ଼ା ତାକୁ ବଡ଼ ଅସହ୍ୟ ହେଲା । ସେ ସମସ୍ତଙ୍କୁ ତା ବୋଉର ମୃତ୍ୟୁ ହୋଇଯା'ଇଥିଲା । ସେ ଥିଲେ ବା ଝିଅ ବୋଲି ଟିକଏ ପଚ୍ଛୁରୁଥାଆନ୍ତା ! ବର୍ତ୍ତମାନ ସେ ସଂସାର-ମରୁଭୂମିରେ ଏକାକୀ ପଥିକପରି ଦୁଃଖ କଷ୍ଟରେ ଜୀବନ କାଟିଲା । ପାଇକ ଗଲେ ଲୋକେ କାଉବାଉ କଲେ; ଘରେ ରହିଲେ ମାଡ଼ ସହିବାକୁ ପଡ଼ିଲା ।

ରମାନାମାକୁ କ ଢଅମେ ନାହିଁ । ସେ କାନ୍ଦଲେ ଠିକ୍ ବଗଡ଼ କୁକୁର-ପରି ମ୍ୟାଉଁ ମ୍ୟାଉଁ, ଭ୍ରେ-ଭ୍ରେ ହୁଏ ଏବଂ ସେ ସ୍ୱର ଏଡ଼େ କର୍କଶ ଯେ ଘରେ କାନ୍ଦଲେ ଦୁଇ ସାହି ଚମକିଯାଏ । ରମାନାମା ଯେ ଘରେ ଅସହାୟ ବିଧବା-ହୋଇ ଏପରିଭାବରେ କଠୋର ଯାତନା ସହୁଛି ଏ କଥା ଗାଁରେ ସମସ୍ତେ ଶୁଣି, ନ ଶୁଣିଲପରି ରହିଲେ; ଅଥଚ ତାହାର 'ପାଟିଟା' ସମସ୍ତଙ୍କୁ ଶୁଭିଲା । ବାଟରେ ଘାଟରେ ସମସ୍ତେ ବିରକ୍ତ ହୋଇ କହିଲେ, "ଏ ଅମଙ୍ଗଳୀଟା ଗାଁରେ ରହିଲେ ଗାଁର ଗୁଡ଼ଯିବ । ଏ ପାଟିରେ ମଣିଷ ଶାନ୍ତିରେ ରହିପାରିଲା ନାହିଁ ।"

ସତେ ଯେପରି ଗାଁରେ ଶାନ୍ତିଦେବୀ ବିଜୟ କରିଥିଲେ, କେବଳ ରମାନାମା ପାଟି କରି ତାହା ଭାଙ୍ଗିଦେଲା, ଏକଥା ସମସ୍ତେ ଅନୁଭବ କଲେ । କିନ୍ତୁ ଅବଳାର ବିକଳ-କାତର ଦୁଃଖ କାହାଣୀ ଶୁଣି, ତାହାର ପ୍ରତିକାର କରିବାପାଇଁ ସମାଜପତିଙ୍କ ବ୍ୟବସ୍ଥାଶାସ୍ତ୍ରରେ କିଛି ବିଧି-ବ୍ୟବସ୍ଥା ନ ଥିଲା ।

ବାଳବିଧବା ରମାନାମା ଏତେଦିନ ଯାଏଁ ଯେଉଁ ଝିଅଶିଶୁ ପୁତୁରଙ୍କୁ ପ୍ରାଣରୁ ବଳି ସ୍ନେହ-ଆଦର କରିଥିଲା, ସେମାନେ ମଧ୍ୟ ତାକୁ ହାତ ଉଠାଇ ମାଇଲେ । ମନୁଷ୍ୟ ଏହା କେତେ ଦିନ ସହିପାରେ ? ଏହା ତ ପଶୁ ସହିବା କଷ୍ଟକର । ଏହି ସମାଜ ପୁଣି ମନୁଷ୍ୟକୁ ଦେବତା କରିପାରେ ବୋଲି ଗର୍ବ କରେ ! ଭଗବାନ୍ କେବେ କଳ୍କି ଅବତାରରେ ବିଜେ କରିବେ, ତାଙ୍କୁ ଜଣା ।

ଗାଁରେ ସେଦିନ ରଥଘର ଶୁଦ୍ଧଘର—ଗାଁର କୁଳବୃଦ୍ଧ ରଘୁ ରଥେ ମରିବାର ସେ ଦିନକୁ ୧୦ ଦିନ । ରାତି ଦୁଇ ପ୍ରହର ହେବ, ଗାଁ ଦାଣ୍ଡରେ ମହାଜନଗଣ ବସିଛନ୍ତି, ରଥଙ୍କ ପିଣ୍ଡାରେ ଜଣେ ଜୀର୍ଣ୍ଣଶୀର୍ଣ୍ଣ ବିଧବା ବିକଳରେ ପେଟ ଦେଖାଇ ଆସି ବସିପଡ଼ିଲା । ତାକୁ ସମସ୍ତେ ଚିହ୍ନିଲେ, ସମସ୍ତେ ପ୍ରତିଚିହ୍ନିଲେ, ସେ ରମାନାଣି । ରମାନାଣି ପାଟିଖୁଣ୍ଡ କଲା ନାହିଁ । ତା' ଆଖିରୁ ଝରଝର ଲୁହ ବୋହିଯାଉଥାଏ । ସେ ଲୁହ ପୋଛିପୋଛି, ପେଟ ଦେଖାଇ ଦେଖାଇ ପଖ ଖଣ୍ଡିଏ ମାଗିଲା । ସେ ସେଦିନକୁ ମିଶାଇ ଚାରିଦିନ ହେଲା ଘରେ ମୁଠେ ଖାଇବାକୁ ପାଇ ନ ଥିଲା । ସେ କଥା ମଧ୍ୟ ସେ ଠାରି ଠାରି କହିଦେଲା । ତା-ପରେ ସେ ଖାଇଲା କି ନ ଖାଇଲା ସେଥିରେ କିଏ ଖୋଜ-ଖବର ରଖିଲେ ନାହିଁ ।

ତା'ଆର ଦିନ ଗୋଟାକଯାକ ଗାଁରେ ଚହଳପଡ଼ିଲା ଯେ ରମା ନାଣି ରଥଙ୍କ ପିଣ୍ଡାରେ ଅଣ୍ଡିରିଙ୍କ ଆଗେ ପଖପକାଇ ଖାଇବସିଥିଲା । ଘରବୁଲାରେ ପେଣ୍ଠ ବସିଲା ପରେ ଏ କଥାଟା ଗାଁକୁ ବଡ଼ ଅଶୁଭଜନକ ହେଲା ବୋଲି ସମସ୍ତେ ଏକ-ସ୍ୱରରେ ସ୍ୱୀକାର କଲେ । କେହି ବୁଝିଲେ ନାହିଁ, କେହି ପଚାରିଲେ ନାହିଁ ଯେ କି କାରଣରୁ ଗାଁର ବାଳକବୃଦ୍ଧଙ୍କ ଆଗରେ ରମା ପେଟଦେଖାଇ ଖାଇବସିଲା ? କେହି ଦେଖିଲେ ନାହିଁ ଯେ ଶୀତଦିନ ରାତିରେ ଲଜ୍ଜାନିବାରଣପାଇଁ ଖଣ୍ଡିଏ ଚିରା ସାତସିଆଁ ଲୁଗା ଗୁଡ଼େଇ ହୋଇ ବିଧବା ସର୍ବସମକ୍ଷରେ ହାତଯୋଡ଼ି କାହିଁକି ବସିଲା ? କିଏ ପଚାରିଲା ନାହିଁ ଯେ ସେ କାହିଁକି ନୀରବରେ ଧାରି ଧାରି ଲୁହ ଢାଳି କିଛି ଠାରିପାରିଲା ନାହିଁ ? ସେ ଅଜାତି ଘରକୁ ଯାଇ ନ ଥିଲା କିମ୍ବା ଗାଁର ଅପରପକ୍ଷ ରଘୁ ମିଶ୍ରଙ୍କ ଶତ୍ରୁପକ୍ଷ ଲୋକଙ୍କ ସଙ୍ଗେ ବସି ଖାଇ ନ ଥିଲା । ସେ ଆନନ୍ଦରେ ଖାଇବାକୁ ଯାଇ ନ ଥିଲା । ସମାଜର କି ପୈଶାଚିକ ଅତ୍ୟାଚାର ! ଅବଳାପ୍ରତି ସମସ୍ତେ ଘୃଣାରେ ନାକ ଟେକି ମନ ମୁତାବକ ନିନ୍ଦା, ଗାଳିବର୍ଷଣ କଲେ, ଖାଲି ସେତିକି ନୁହେଁ; ଦାଣ୍ଡରେ ଏ ଚହଳ ଯେତିକି ଘନୀଭୂତ ହୋଇଆସିଲା, ଘରେ ରମାନାଣି ଉପରେ ସେତିକି ଗୁଞ୍ଜୁଣୀମୁଣ୍ଡା ବୃଷ୍ଟି ହେଲା । ଅନବରତ କାନ୍ଦି କାନ୍ଦି ତା' ଆଖିରେ ଲୁହଟୋପେ ନ ଥିଲା । ସେଦିନ ସେ ନେହ୍ୱଟରେ ନିର୍ଜଳରେ ଘରେ ପଡ଼ିରହିଲା ।

ରାତି ପ୍ରାୟ ପ୍ରହରେ ହେବ, ରଘୁ ମିଶ୍ରଙ୍କ ବାଡ଼ିପଟେ ଅନ୍ଧାରି ଏକ ଚହଳ ଚଢ଼ିଲା । ରମାନାଣୀର ଗଁ-ଗଁ ପାଟିଶବ୍ଦ ଶୁଭିଲା—କ୍ରମେକ୍ରମେ ସେହି ସ୍ୱର ଗାଁ ଶେଷ ମୁଣ୍ଡଯାଏ ଯାଇ ସେହି ନିର୍ଜନ ଅନ୍ଧକାର ରାତିରେ ବିଲପ୍ରାନ୍ତର ଭିତରେ

ପବନରେ ଲୀନ ହୋଇଗଲା । ଗାଁର କୁଳବୃଦ୍ଧ ବ୍ୟବସ୍ଥାଦାତାଗଣ ମଠା ପିନ୍ଧି, ମାଳା ପକାଇ ସେତେବେଳେ ପିଣ୍ଡାରେ ବସି ଗୁଣା ଗୁଣି କରୁଥିଲେ ।

ଏ ଘଟଣାର ଛଅମାସପରେ ରମାନାମୀର ଖବର ମିଳିଲା । ଅନେକ ଲୋକ ଦେଖିଆସି କହିଲେ ସେ ସେ ଖୋରଧା ବଜାରରେ ବୁଲି ବୁଲି ଭିକ ମାଗୁଥିଲା । ତା' ଅଣ୍ଟାରେ ଖଣ୍ଡିଏ କନା ଗୁଡ଼ାହୋଇଥିଲା । ମୁଣ୍ଡର ବାଳ ଝୁରୁଝୁ ଝୁରୁଝୁ ଉଡ଼ୁଥିଲା ବୋଲି ସେ ସେଥିରେ ଖଣ୍ଡିଏ କନାଧଡ଼ି ବାନ୍ଧିଥିଲା । ତା' ସମ୍ପତ୍ତି ଭିତରେ ଥିଲା ଖଣ୍ଡିଏ କନା, କାନରେ ମୁଠିଏ ଘୁଙ୍ଗୁଳ । ସେ ଘୁଙ୍ଗୁଳ ଗଣ୍ଡିଏ ପାଟିରେ ପକାଇ ପକାଇ ଏ ଦୁଆରକୁ ସେ ଦୁଆର, ଏ ଦୋକାନରୁ ସେ ଦୋକାନ ହେଉଥିଲା । ଗତ ଛଅମାସ ମଧ୍ୟରେ ସେ କେବେ ପେଟେଇ କରିଥିବାର ଅନୁମାନ କରି ହେଉ ନ ଥିଲା । ତା' ଗୁଜୁଳରେ ଶୁଖିଲା ଘୁଙ୍ଗୁଳ ମୁଠିଏ ସବୁବେଳେ ନ ଥାଏ । ଯାହା ପାଏ ତାହା ଖାଇଦିଏ ।

ଏହିପରିଭାବରେ ଛ'ମାସ କଟିଗଲା । ରମାନାମୀର ଗୋଡ଼ହାତ ଫୁଲି-ଆସିଲା । ସେ ଧୂଆ ପିଣ୍ଡାରେ, ତା' ଓଳିତଳେ ନ ଖାଇ ନ ପିଇ ପଡ଼ିରହିଲା ।

ମାଧବ ଯେଉଁଦିନ ଗୋବିନ୍ଦ ଆଗେ ରମାନାମୀ ମରିବା କଥା କହୁଥିଲା, ସେ ଦିନକୁ ରମାନାମୀ ମରିବାର ଛଅଦିନ । ମାଧବର ଘର ଖୋରଧା ପାଖ ଛଚାବର ଗାଁରେ । ସେ କଂଗ୍ରେସ କାର୍ଯ୍ୟରେ ବୃନ୍ଦପୁରକୁ ଖଦଡ଼ ବିକି ଯାଇ-ଥିଲା । ରମାନାମୀକୁ ସେ ଭଲ କରି ଜାଣେ । ତାଂର ମାମୁଘର ଗୋବିନ୍ଦ ଗାଁରେ । ଗୋବିନ୍ଦର ସେ ଭାରି ସାଙ୍ଗ ଥିଲା । ସେ ଦୁହେଁ ଏକାଠି ପିଲାବେଳେ ପଢ଼ୁଥିଲେ । ଗୋବିନ୍ଦ ରମାନାମୀର ପୁତୁରା, ତେଣୁ ରମାନାମୀର ସ୍ନେହ ଗୋବିନ୍ଦ ସାଙ୍ଗେ ମାଧବ ମଧ୍ୟ ପାଇଥିଲା ।

ମାଧବ ବୃନ୍ଦପୁରରେ ଦେଖିଲା, ଜଣେ ସଣ୍ଡିମାଇପି ପିଣ୍ଡାରେ ଜଣେ ବିଧବା କନା ଖଣ୍ଡିକରେ ହଗି-ମୁତି ପଡ଼ିଛି । ତା'ର ପ୍ରାଣବାୟୁ ସେପର୍ଯ୍ୟନ୍ତ ଯାଇ ନ ଥିଲା । ମାଧବ ପାଖକୁ ଯାଇ ଚିହ୍ନିପାରିଲା ଯେ ସେ ରମାନାମୀ । ତା ବୁକୁରେ ହଠାତ୍ ପଥର ପଡ଼ିଲାପରି ଲାଗିଲା । ସେ ଅକାମାର ତା' ଆଗରେ ଠିଆହେଲା । ରମାନାମୀ ଆଖି ଫିଟାଇ ଚାହିଁଲା, ତା' ଆଗରେ ମାଧବ ! ତା' ଆଖି ଟିକିଏ ଉଜ୍ଜ୍ୱଳ ହୋଇଆସିଲା । ସେ ଉଠି ମାଧବକୁ ଧରି ପକାଇବ ବୋଲି ହେଲା; ମାତ୍ର ଉଠିପାରିଲା ନାହିଁ । ନୀରବରେ ତା' ଆଖିରୁ ଦୁଇଧାର ଲୁହ

ହୋଇଗଲା । ମାଧବ ଛଳଛଳ ଆଖିରେ ତା' ହାତ ଧରିପକାଇ ଏକଲକ୍ଷ୍ୟରେ ତାକୁ ଚାହିଁରହିଲା ।

ଏଣେ ମାଧବ ପଛରେ ଏ ରହସ୍ୟ ଦେଖିବାପାଇଁ ଜଣ ଜଣ ହୋଇ ଗାଁଯାକ ଜମା ହୋଇଗଲେଣି । ସମସ୍ତେ କହୁଛନ୍ତି—

"ଛୁଅଁ ନା ବାବୁ, ଛୁଅଁ ନା; ତା'ର ଜାତି ନାହିଁ । ସେ ଗୋଟେ ମାଗିଖାଇ ମାଈପି ।"

ମାଧବ ଟିକଏ ଗାଁବାଲାଙ୍କଆଡ଼କୁ ଚାହିଁଦେଲା । ସ୍ନେହ ସହାନୁଭୂତିର ଗାଢ଼ ଛାୟା ତା' ଆଖିକୁ ଅଶ୍ରୁହାଲ କରିପକାଇଥିଲା । ତା'ର କଣ୍ଠସ୍ୱର ଆର୍ଦ୍ର ହୋଇଆସିଥିଲା । ସେ ପଦେ କଥା କହି ନ ପାରି ରମାନାମୀ ପାଖରେ ବସିପଡ଼ି ଏକ ଦୀର୍ଘନିଃଶ୍ୱାସ ପକାଇଲା । ଦୀର୍ଘ ଦଶ ବର୍ଷପରେ ସେ ରମାନାମୀକ—ସ୍ନେହମୟୀ ରମାନାମୀକୁ ଦେଖିଛି, ତା'ର ଅତୀତ ଚିନ୍ତାସବୁ ଆସି ହୃଦୟପଟରେ ଜମାଟବାନ୍ଧିଲା । ସେ ଭାବିଲା—ସ୍ନେହ, ଦୟା, ଆଦରର କ'ଣ ଏହି ପରିଣାମ ! ସେ ହୃଦୟର କି ଏହି ଶୋଚନୀୟ ଅବସ୍ଥା ଘଟିବାକୁ ଥିଲା ? ତାହାର ମୂଲ୍ୟ ସଂସାର ତାକୁ ଏହିପରିଭାବରେ ଦେଇଛି, ଯାହାକୁ ଦେଖିଲେ ଅନ୍ୟ ନେତ୍ରରେ ଲୁହଆସୁଛି ! ତା'ର ଆଖି ଛଳଛଳ ହୋଇଆସିଲା ।

କିଛି ସମୟପରେ ରମାନାମୀ ତାକୁ କ'ଣ ଠାରିଲା । ମାଧବ ସେ ଠାରରୁ ବୁଝିପାରିଲା ସେ ଗୋବିନ୍ଦ ଭଲ ଅଛି କି ନାହିଁ, ସେ ଠାରୁଛି ।

ରମା ! ତୁମେ ସ୍ୱର୍ଗର ଦେବୀ । ଏତେଦିନ ପରଦ୍ୱାରସ୍ଥ ହୋଇ, ଦୀନହୀନ ବେଶରେ ବୁଲି ତୁମେ ଗୋବିନ୍ଦକୁ ମନରେ ରଖିଛ ? ତୁମ ହୃଦୟରେ ପରପାଇଁ ଆହୁରି ସ୍ଥାନ ଅଛି ? ସମାଜ ତୁମକୁ ଭିକାରଣୀ କରି ଦାଣ୍ଡକୁ ଠେଲିଦେଇଛି; ଅଥଚ ତୁମେ ଏହି ଭିକାରଣୀବେଶରେ ସମାଜକୁ ସ୍ୱର୍ଗୀୟ ସହାନୁଭୂତିରେ ମଣ୍ଡିବାକୁ ଯାଉଛ !

ମାଧବ ଠାରରୁ ଗୋବିନ୍ଦ ଭଲଥିବାର ଜାଣି ରମାନାମୀ ହାତ ଠାରି ତା' କନା ବୁଜୁଲାଟି ଦେଖାଇଦେଲା । ଦେଖୁ ଦେଖୁ ତା' ଆଖି ମୁଦି ହୋଇ-ଆସିଲା । ସେ ଯେପରି ମାଧବକୁ ଅପେକ୍ଷା କରି ଏତେ ସମୟ ଅଟକିରହିଥିଲା । ତା'ର ମୁହଁକୁ ଚାହିଁ, ତା'ର ହାତକୁ ବୁକୁରେ ଧରି ଧରି ସେ ଆଖି ମୁଦିଦେଲା । ତା'ର ଅଶ୍ରୁହାଲ ଜୀବନ-ତରଣୀ କାଳସମୁଦ୍ରରେ ଭସାଇଦେଲା । ରମାନାମୀର ଶେଷ-ପବନ ଉଡ଼ିଗଲା ।

ଜାତି ଯିବା ଭୟରେ ବୃନ୍ଦପୁରର କୌଣସି ଲୋକ ରମାନାମାର ମଡ଼ା କାଢ଼ିବାକୁ ବାହାରିଲେ ନାହିଁ । ମାଧବ ଶେଷରେ ନିଜେ କାନ୍ଧେଇ ଗାଁ ପାଖ ଏକ ନାଳରେ ନେଇ ତାକୁ ପକାଇଆସିଲା ।

ରମାନାମାର ସେହି ସମାଜର ଅତ୍ୟାଚାରରେ ପ୍ରପୀଡ଼ିତ; ତା' ପବିତ୍ର-ଦେହର ମାଂସ ପଶୁପକ୍ଷୀ ଆନନ୍ଦରେ ଖାଇଗଲେ । ସମାଜ ତା' ମୁହଁରେ ନିଆଁ ମୁଠେ ଦେଇଥିଲେ, ତା' ମୃତ ଶରୀରର ଉପଯୁକ୍ତ ସତ୍କାର ହୋଇ ନ ଥାନ୍ତା । ରମାନାମାର ସେହି ବୁଜୁଲାଟିରେ ଟଙ୍କା ଦଶଟି ଥିଲା । ଭିକ ମାଗି ମାଗି ସେ ତାହା ଜମା କରିଥିଲା । ମାଧବ ତାକୁ ଗୋବିନ୍ଦ ହାତକୁ ଦେଇ କହିଲା, "ତୁମ ରମାନାମା ଦେଇଛନ୍ତି ।" କହିଲାବେଳେ ମାଧବ ଆଖିରୁ ଦୁଇଟୋପା ଲୁହ ତଳେ ପଡ଼ିଯାଇଥିଲା ।



# ଜାତଚ୍ୟୁତ

ମୁନସିପାଲ୍‌ଟିର ଆଲୁଅଖମ୍ବ ଉପରେ ଆଲ୍‌ଅଟା ଯେତେବେଳେ ଜଳଉଠେ, ଠିକ୍ ସେଇ ସମୟକୁ ଧରମା ତା'ର ସହର ଗସ୍ତରୁ ଫେରେ ।

ଧରମାର ଗସ୍ତ ଏ ଯୁଗର ସରକାରୀ କର୍ମଚାରୀଙ୍କ ଗସ୍ତ ପରି ନୁହେଁ । ତା' ଗସ୍ତର ଅର୍ଥ ସକାଳୁ ଉଠି ବାରସାହି ବୁଲି ଭିକ ମାଗିବା, ଅଇଁଠା ଖଲି ଗୋଟେଇବା କିମ୍ବା କୌଣସି ମିଠେଇଦୋକାନ ବା ହୋଟେଲ ଆଗରେ ଠିଆ ହୋଇ ସତୃଷ୍ଣ ଲୋଚନରେ ନଜର ଅବସ୍ଥିତିଟିକକ ହରେଇଲାପରି ଚାହିଁରହିବା । ଏଇ ହେଉଛି ଧରମାର ପ୍ରତିଦିନର କାର୍ଯ୍ୟ ।

କାହିଁ କେଉଁ ଦୂର ମଫସଲ ଗାଁରୁ ସମୁଦ୍ର ପାର ହୋଇ ସହରକୁ ଆସିଲା ଦିନୁ ଧରମା ତା'ର ଘରଟି ମନ ମୁତାବକ ବାଛି ନେଇଛି । ସହରର ଗଳିରେ ଗଳିରେ ପକାଘର, ସାଇରେ ସାଇରେ ଝିଙ୍କରଘର ମଧ୍ୟ ଅଛି; ମାତ୍ର ସେ ଯେଉଁ ଘର ବାଛିଛି ସେପରି ଘର କାହାରି ହେଲେ ନାହିଁ । ତାହା ହେଉଛି, ସହର ଶେଷରେ ମୁନସିପାଲ୍‌ଟିର ଆଲୁଅଖମ୍ବ ପାଖରେ ଥିବା ଏକ ପଥର ଶଙ୍ଖ ପାଖ ।

ବର୍ଷାଦିନେ ସେଇ ଶଙ୍ଖବାଟେ ସହରର ଆବର୍ଜନା, ମଇଳାପାଣି ବହିଯାଏ । ଅନେକ ସମୟରେ ମୁନସିପାଲ୍‌ଟିର ମଇଳାବୁହା ଶଗଡ଼ ତାହାରି ପାଖରେ ଥୁଆହୁଏ । ଅନ୍ଧାର ରାତିରେ ଆଲୁଅଟା ଜଳଉଠିଲେ ସେଠାରେ ଭୂମିଖଣ୍ଡ ଟିକିଏ ଆଲୋକିତ ହୋଇଯାଏ । ବେଳେବେଳେ ଦୁଇ ଚାରିଟା କୁକୁର ସେଠି ଜମା ହୁଅନ୍ତି । ଦୁଇ ଚାରି ଜଣ ମଦୁଆ କେତେବେଳେ ବା ପାଖ ତାଡ଼ିଦୋକାନରୁ ତାଡ଼ି ଖାଇ ଫେରି ସେଇ ଆଲୁଅରେ ବଳକା ପଇସା ଗଣି ବସନ୍ତି ।

ଶଙ୍ଖଟା ପାଖରେ ଯେ ଧରମା ରହେ, ଏକଥା ସେ ସାହିର ବାରପଣ ଲୋକ ଜାଣନ୍ତି ନାହିଁ । ସହର ଭିତରେ ଧରମା ତା'ର ଦୁଃସାହସିକ ଜୀବନ

ଯାପିଲା ଦିନୁ ସେଠାକୁ ସେ ଝଡ଼-ବର୍ଷା, ପାଣି-ପବନର ନିରାପଦ ସ୍ଥାନ ମନେ କରି କୁକୁର, ହାକିମ ଏବଂ ଦୁଷ୍ଟ ଲୋକାଙ୍କ ଶନିଦୃଷ୍ଟିରୁ ରକ୍ଷା ପାଇଆସିଛି । ସେ ଏପରି ଏକ ସ୍ଥାନରେ ଆସି ରହିବାର ତିନିମାସପରର ଘଟଣା ଏହିଠାରେ କୁହାଯାଉଛି ।

ହଠାତ୍ ଦିନେ ସାତ ·ଦି'ଘଡ଼ିକୁ ଧରମାର ଶଙ୍ଖପାଖ ଆଲୁଅ କି କାରଣରୁ ଲିଭିଗଲା । ଏକେ ତ ଧରମାର ହୃଦୟ ଭିତରେ ସବୁବେଳେ ଅନ୍ଧକାର-ମୟ ଥାଏ, ସେଦିନ ତାକୁ ବାହାର ଜଗତଟା ମଧ୍ୟ ଅନ୍ଧକାରମୟ ଦେଖାଗଲା । ତା' ଆଖିକୁ ଆକାଶର ତାରା ଦେଖାଗଲେ ନାହିଁ କି ପୃଥିବୀର ମନୁଷ୍ୟ ମୁଖା ଦେଖାଗଲେ ନାହିଁ ।

ଅନ୍ଧାର ଜଗତରେ ଶଙ୍ଖପାଖରେ ବସି ସେ କେତେ କଥା ଭାବିଲା । ସକାଳୁ ସୂର୍ଯ୍ୟ ନ ଉଠୁଣୁ ସେ ସହର ବୁଲିଲା, କି ଦୁର୍ଯୋଗରେ ସାରା ପାହିଥିଲା, ପେଟ ପୂରାଇ ମୁଠେ ତାକୁ ଖାଇବାକୁ ମିଳିଲା ନାହିଁ । କେତେ ଦୁଆରେ ଡାକିଲା, କେହି ହେଲେ କାନ ଡେରି ତା' ଡାକ ଶୁଣିଲେ ନାହିଁ ।

ଦୁଇ ଆଣ୍ଠୁରେ ଦୁଇକହୁଣୀ ଦେଇ ହାତ ଭିତରେ ମୁହଁକୁ ଲୋଡ଼ାଇ ସେ ଦିନର ତା' ଜୀବନର ବିଶିଷ୍ଟ ଘଟଣାଟି ପୁଣି ମନେ ପକାଇଲା । ତା ଦେହ ମୁଣ୍ଡ ଥରିଗଲା । ମନକୁ ମନ କହିଲା—"ମାଇଲା ! କିଛି କହି ନାହିଁ, ପାଟି ମଧ୍ୟ କରି ନାହିଁ । ତେବେକେ ହେଲେ ମାଇଲା ! କେଡ଼େ ନିଷ୍ଠୁର ସେ ! ପକାଘର ଭିତରେ କଣ ଏପରି ଲୋକ ରହିପାରନ୍ତି ? ପିଲାଝିଲ ଧରି, ଘରଦ୍ୱାର କରି, ଧୋବ ଲୁଗା ପିନ୍ଧି ମଣିଷ କ'ଣ ପରକୁ ଇମିତ ମାରିପାରେ ? ଭୋକିଲା ଲୋକକୁ କଣ ଇମିତ କିଏ ଦୁଆରୁ ତଡ଼ିଦେଇପାରେ ?"

ବୁକୁ ଭିତରେ ଫାଟିଇ ବାହାରକଲାପରି ସେ ଏବେ ନିଃଶ୍ୱାସ ମାରି କହିଲା—"ମୁଁ ଏଡ଼େ ନିଷ୍ଠୁର ହୋଇପାରିବି ?" ମନେ ମନେ ସେ ନିଜ କଥାକୁ ନିଜେ ନାପସନ୍ଦ କଲା । ହଠାତ୍ ତା' ଆଖିକି ଦେଖାଗଲା, ଠିକ୍ ତାହାରି ପରି ଏକ ବୁଲା ଭିକାରୀ ତା' ଆଗରେ ଆସି ଠିଆ । ନିତାନ୍ତ କଦର୍ଯ୍ୟ ନିତାନ୍ତ ହୀନବେଶ !—ତଳେ କେଉଁଠି ପଡ଼ିଯାଇ ଆଣ୍ଠୁ ଛିଡ଼ିଯାଇଛି, କହୁଣୀରୁ ଝରଝର ହୋଇ ରକ୍ତ ବୋହୁଛି, ମଇଳା ଲୁଗା ଖଣ୍ଡିକ ରକ୍ତଦାଗରେ ଚିତ୍ର ହେଲାପରି ଦିଶୁଛି, ମାଗୁଛି—"ମୁଠେ ଖାଇବାକୁ ଦିଅ ସାଆନ୍ତେ, ମୁଠେ ଖାଇବାକୁ ଦିଅ !"

ଦେଖିଲି—ଭକାଣ୍ଡ ପେଟିବିକଳରେ କାନ୍ଦୁଛି, କାନ୍ଦ କାନ୍ଦ କହୁଛି—"ଘର ମୋର ଦୂରରେ ବାବୁ, ଏ ସମୁଦ୍ର ଆରପାଖରେ ପାରକୁଦ ସାତପଡ଼ା ଗାଁରେ । ଆହା ! ଦୁଃଖରେ ମାଆ ମୋତେ ପାଳିଥିଲି, ସେ ନେଜ ଖାଇ ମୋତେ ଭାତମୁଠାକ ଖୁଆଉଥିଲି । ଏତେ ବଡ଼ ମରୁଡ଼ି ପଡ଼ଲା, ଲୋକେ ଜନ୍ଦା ପିମ୍ପୁଡ଼ି ପର ମଲେ; ମାତ୍ର ମାଆ ମୋତେ ଢୋକେ ପୋଷେ ପିଆଇ ଜୀଆଇ ରଖିଲି । ବାପ ମଲି, ସେ କଥା ମୋର ଟିକଏ ଟିକଏ ମନେ ପଡ଼ୁଚି । ସେ ମଲାବେଳକୁ ପେଟ ତା'ର ପିଠି ସଙ୍ଗେ ଲଗିଯାଇଥିଲା, ଗୋଡ଼ ହାତ ଫୁଲି ଫାଟିଲି ପର ରହିଥିଲି । କଏ ତାକୁ ଘରୁ କାଢ଼ିନେଲେ, ମୁଁ ଜାଣିଲି ନାହିଁ; ମାତ୍ର ଯେଉଁଦିନ ମା' କାନରେ ପଥୁଣ୍ଡ ଖଣ୍ଡିକ ବାନ୍ଧି ମୋତେ କାଖ କର ଗାଁ ଛାଡ଼ିଲି, ସେଦିନ କଥା କ'ଣ କହିବ ? ଗାଁଆ ପାଖ କଇଁଆ ତୋଟା ଭିତରେ ଏକ ଧଳା ମଣିଷ ମୁଣ୍ଡକୁ କୋଳକୁ ଟାଣିଆଣି ମାଆ ଯେ କେତେ କାନ୍ଦିଲି ସେ କଥା ମୋର ମନେ ଅଛି । ତା କାନ୍ଦ ଦେଖି ମୁଁ କାନ୍ଦ ପକାଇଥିଲି । ବାପ ନାଁଆ ଧର ମାଆ ସେ ମୁଣ୍ଡଟାକୁ ଗୋଟାଏ ବୁଦାଗହଳରେ ଲୁଚେଇଲା ପର ଥୋଇ ମୋତେ କାଖେଇ ଚାଲିଆସିଲି । ଗୋପାଳପୁର ଗାଁର ଧୋବେଇ ଶତପଥୀକୁ ଜାଣିଥିବ ତମେ । ଦିନେ ମୋ ମାଆ କୋଳରୁ ନିଦ ଭାଙ୍ଗିଲି ବେଳକୁ ଦେଖିଲି ମୁଁ ସେହି ଶତପଥୀଙ୍କ ବାଡ଼ଦୁଆର ବରଗଛମୂଳେ କନା ଖଣ୍ଡିକରେ ଶୋଇଚି । ପାଖରେ ମାଆ ମୁଣ୍ଡରେ ହାତ ଦେଇ ବସିଚି ।".

ଭକାଣ୍ଡ ଦୂର ଅସ୍ତାଚଳକୁ ଫେରଚାହିଁଲା ପର ଆଖିକୁ ଦରମୁଦା କର କହିଲା—"କେତେ ଅନ୍ଧାର ରାତି ମୋର ସେଠାରେ କଟିଲା, କେତେ ଚନ୍ଦ୍ରରାତିରେ ସେଠି ମାଆ କୋଳରେ ବସି 'ରାମ ଲଇକ୍ଷଣ' ଗୀତ ବୋଲିଲି, କେତେ ବାଲିଘର କର କେତେ ବାଲିଘର ଭାଙ୍ଗିଲି । ସେଠାରେ ଭାତ ମୁଠିକରେ ଦୁହିଁଙ୍କର ପେଟ ପୂରେ, କାନି ଖଣ୍ଡିକରେ ଦୁହିଁଙ୍କର ନିଦ ହୁଏ ।"

"ମରୁଡ଼ିକାଳ ଗଲା—ବିଲରେ ଫସଲ ହେଲା । ଲୋକେ ଖାଇପିଇ ଫୁଁ ଫାଁ ହେଲେ । ମୂଲିଆଙ୍କୁ ମୂଲ ମିଳିଲା । ଦିନେ ମାଆ ତା' କାନରେ ମୋ' ଦେହରୁ ଧୂଳି ଝାଡ଼ି ଦେଇ, ଶତପଥୀଙ୍କ ପଖାଳ ଠିଆକରେଇ କହିଲା—ବାବୁ, ଅଳ୍ପ ଦିନରେ ମୁଁ ଫେରଆସିବ । ରହିଥା ଏଇଠି । ମୋ ଧନ ପରା, ଶତପଥୀଙ୍କ ଗୁହାଳ ପିଣ୍ଡାରେ ଟିକଏ ଶୋଇପଡ଼ୁଥିବୁ । ଆମ ଗାଁରୁ ମୁଁ ଯାଇ ଫେରଆସିଲେ ମୋ କୋଳରେ ଶୋଇବୁ, ତତେ କାଖ କର ନେବ ।"

"ମାଆ କଥା ଶୁଣି ମୁଁ ଭୋ'କରି କାନ୍ଦଉଠିଲି । ମାଆକୁ ରଖିପାରିଲି ନାହିଁ । ମାଆ ମୋ ଲୁହ ପୋଛିପୋଛି, ହାତରେ ଗୁଟିଏ ପଇସା ଗୁଞ୍ଜିଦେଇ ବାଡ଼ବାଟେ ଗାଁକୁ ଚାଲିଗଲା ।

"ମାଆ କହିଥିଲା, ଫେରିବ ଚାରି ଦିନରେ । ଚାରିଦିନ ଗଲା, ଆଠଦିନ ଗଲା, ମାସେ ଗଲା, ଚାରିମାସେ ଗଲା, ମାଆ ଆଉ ଫେରିଆସିଲା ନାହିଁ । ମୁଁ କାନ୍ଦିଲି, କାନ୍ଦି କାନ୍ଦି କେତେ ଦିନ ଉପାସରେ ଶୋଇଲି—ମାଆ ଆଉ ବାହୁଡ଼ିଲା ନାହିଁ ।

"ଦିନେ ଶତପଥୀଏ ମୋତେ ସଙ୍ଗରେ ଧରି ମୋ ଅଣ୍ଟିରେ ଚାରି ପଇସାର ମୁଡ଼ିମୁଆଁ ଗୁଞ୍ଜିଦେଇ ଚମ୍ପାଦେଈପୁର ଗାଁକୁ ଗଲେ । ସେଠାରେ ଗାଁମୁଣ୍ଡରେ ଜଣେ କଳା କଟ୍‌କଟ୍ ଲୋକ ସାଙ୍ଗରେ କ'ଣ କଥା ହେଲେ କେଜାଣି, ଟିକକ ପରେ ଆସି ମୋତେ କହିଲେ—'ଯାକ, ଏ ବୁଢ଼ା ଘରେ ରହିବୁ । ତୋ ମାଆ ଆସିଲେ ମୁଁ ଆସି ତତେ ସାଙ୍ଗରେ ନେଇଯିବି ।'

"ମୁଁ କେତେ ନାହିଁ କଲି, କେତେ କାନ୍ଦିଲି, ସେ ଆଉ ମୋତେ ସାଙ୍ଗରେ ଫେରାଇ ନେଲେ ନାହିଁ । ସେତିକବେଳେ ସେହି କଳା ଲୋକଟା ମୋର ହାତ ଧରି ଧରି ତା'ର କୁଡ଼ିଆ ଘରଭିତରକୁ ନେଇଗଲା । ଠିକ୍ ଏହି ଘଟଣାର ମାସକପରେ ମାଆ ଆସି ଚମ୍ପାଦେଈପୁରରେ ହାଜର । ସେ ମୋତେ ଦେଖି ଦାଣ୍ଡରେ ମୁଣ୍ଡ ବାଡେଇ ଗଡ଼ିଗଲା, ଗଡ଼ିଆସିଲା । କାନ୍ଦି କାନ୍ଦି କହିଲା—'ଧୋବେଇ ଶତପଥୀ ମତେ ସାରିଦେଲାରେ, ମତେ ସାରିଦେଲା ! ମୋ ଧନକୁ ପାଣିଦରେ ବିକିଦେଲା ! କିଏ ଅଛ ହେ ପ୍ରଭୁ, ମୋ ଧନକୁ ମତେ ଫେରେଇ ଦିଅ ।'

"ସମସ୍ତେ ଶତପଥୀଙ୍କୁ ଛି-ଛି କଲେ । କହିଲେ, 'କୁଳରୁ କାଢ଼ିଛି, କୁଳବୁଡ଼ାର କୁଳ ରହିବ ନାହିଁ ।" ମା ଆଉ କାହା ଦୁଆରେ ଆଶ୍ରୟ ପାଇଲା ନାହିଁ—କେବଳ ମୁଁ ଥିଲି ବୋଲି । ଭାବି ଭାବି ସେ କଣ୍ଢା ପରି ହୋଇଗଲା । କାନ୍ଦି କାନ୍ଦି ବାୟାଣୀ ପରି ହୋଇ ଏଇ ମୁଁ ଅଜାତିଆ ପୁଅକୁ ଚାହିଁ ଚାହିଁ ସେହି ଶତପଥୀଙ୍କ ବାଡ଼ଦୁଆରେ ପ୍ରାଣ ହରେଇଦେଲା ।

"ମାଆ ମଲାପରେ ମୁଁ ଶତପଥୀଙ୍କୁ ଯାଇ କହିଲି—ମୋତେ ଏତେବେଳେ ସାହା ହୁଅ । ପିଲା ଥିଲି । ନ ଜାଣି ପାଣିଦରେ ଖାଇ ପକାଇଲି । ଏବେ ମୋତେ ଚାକରି ଖଣ୍ଡିଏ ଦେଇ ରକ୍ଷା କର ।"

ଗର୍ଜନ ଶୁଣିଲ—"ପାଣ ! ଦୁର ହୋ । ମୋ ପିଣ୍ଡାକୁ ଉଠନା ।"

"ଫେରଆସିଲ । କରଣ ଘରର ପୁଅ ଅଜାତିଆ ପାଣ ମୁଁ । ଫେରଆସି ପାଣ ପରିଚୟ ଦେଇ ଭିକ ମାଗିଲ—ତେବେକେ ପେଟ ପୂରିଲ ନାହିଁ । ଆସିଲ ଏଇ ରେଙ୍ଗୁନ ଦେଶକୁ । ଏବେ ଏଇଠି ଏମିତି ବୁଲୁଚି । ସଂସାର ମୋତେ ଜାଣିଲ ପାଣ ବୋଲ; ମାତ୍ର ସତେ କଅଣ ମୁଁ ପାଣ, ବାବୁ ?"

ଧରମାର ଆଖିକୁ ଦିକାଶ ଟୋକାଟା ସତ୍ୟା ଜଳଜଳ ଦେଖାଗଲ । ତା'ର ରକ୍ତ ବୋହିବା ସଙ୍ଗେ ସଙ୍ଗେ ସ୍ୱାର ଆଖିରୁ ଦୁଇଧାର ଲୁହ ବୋହିଲ । 'ନାହିଁ ବାବୁ, ତୁ ପାଣ ନୋହୁ'—କହି ସେ ହଠାତ୍ ହାତ ବଢ଼ାଇ ତା ହାତକୁ ଧରପକାଇଲା । ଦେଖିଲା, ସେ ନିଜେ ଶଙ୍ଖ ପାଖରେ କଳା କଟକଟ ଆଲୁଅ ଖମ୍ବଟାକୁ କୁଣ୍ଢେଇ ଧରିଚ—ତା ପାଖରେ ଆଉ କେହି ନାହାନ୍ତି । ନିଜକୁ ନିଜେ ସେ ଗୁହିଁ ବୁଝିଲା ସେ ନିଜେ ଧରମା, ଆଉ କେହି ନୁହେଁ···

ନିଜ କଥା ସେ ଭାବୁଥିଲ !



# ଗଡ଼ଜାତର "ଦେବରାସ୍ତା"

ଖାଲି ରାସ୍ତା—ରାସ୍ତା—ରାସ୍ତା !

ସେ ରାସ୍ତା କେତେ ଦୂର ଯେ ପଡ଼ିଛି ତାହା ଜଣା ନାହିଁ । କେଉଁଠୁ ଯେ ତାହା ଆରମ୍ଭ ହୋଇଛି ସେକଥା ମଧ୍ୟ ସମସ୍ତେ କହିପାରିବେ ନାହିଁ । ସମସ୍ତେ ଜାଣନ୍ତି ସେଟା ରାସ୍ତା—ମାଟିଗୋଡ଼ର ରାସ୍ତା, ପଥର-କଙ୍କରପିଟା ରାସ୍ତା ।

ଦୁଇପାଖେ ଘନ ଜଙ୍ଗଲ, ସେ ମଝିର ରାସ୍ତା । ଘନ ଅରଣ୍ୟାନୀର ବୁକୁ ଭିତରେ ବିଦାରି କରି ସେହି ରକ୍ତାଭ ରାସ୍ତା । ଦର୍ପଭରେ ଫିଟି ଚାଲି-ଯାଇଛି । ଦୁଇ ପାଖରେ—ରାସ୍ତାର ଦଶ ବାର ହାତ ଦୂରରେ ବିଶାଳ ତରୁଶ୍ରେଣୀ ଆକାଶକୁ ମୁଣ୍ଡଟେକି ଠିଆହୋଇଛନ୍ତି । ଅଥଚ ସେହି ତରୁରାଜ୍ୟର ଗ୍ଲୋଟ ଜାଗାଟିଏ ସୁଦ୍ଧା ସେହି ରାସ୍ତା ଉପରେ କେବେ ହେଲେ ମୁଣ୍ଡ ଟେକିବାର ସାହସ ପାଇ ନାହିଁ । ରାସ୍ତା ଜଙ୍ଗଲକୁ ଜୟ କରିଛି । ରାସ୍ତାର କି ସାହସ !

କେବେ ଯେ ସେହି ରାସ୍ତା ବଣର ବୁକୁ ଚିରି, ଗଛପଥର ଗର୍ବ ଭାଙ୍ଗି, ଗିରି-ପାହାଡ଼କୁ ବେଖାତିରି ଦେଖାଇ, ଗଡ଼ଜାତର କଙ୍କର ଭୂଇଁରେ ପଡ଼ିଲା, ସେ କଥା ବାଟଘାଟର ଲୋକଙ୍କୁ ପଚାରିଲେ ସ୍ମରଣରେ ସୁଦ୍ଧା ଆଣିପାରିବେ ନାହିଁ । କେତେବେଳେ ଯେ ପାହାଡ଼ଉପରେ ହାତୁଡ଼ି ପିଟାହେଲା, କେତେବେଳେ ଯେ କୁରାଢ଼ିର ନିର୍ଦ୍ଦୟ ପ୍ରହାରରେ ତରୁଶ୍ରେଣୀ ଭୂଇଁରେ ଢଳିପଡ଼ିଗଲେ, କେତେବେଳେ ଯେ ଶ୍ରମକ୍ଲାନ୍ତ ଶ୍ରମିକ ତାର କପାଳର ଝାଳବିନ୍ଦୁକୁ ପୋଛି ଜନହୀନ ବଣଭିତରେ 'ପ୍ରଭୁ ହେ' ବୋଲି ଡାକିଲା, ଏସବୁ କଥାର ଉତ୍ତର ଦେବାପାଇଁ ସମସ୍ତେ ସମର୍ଥ ହେବେ ନାହିଁ । ସେହି ରାସ୍ତାର ଯେ ରକ୍ତାଭ ବର୍ଣ୍ଣ ହୋଇଛି ତାହା ଶ୍ରମିକର ରକ୍ତର ଦାଗରେ ହୋଇଛି, କି ବାଟୋଇର ପାଦର ବାଧାପାଇ ହୋଇଛି, କି କେଉଁ ଅପସରୀର ପାଦର ଅଳତାଦାଗ ଲାଗି ହୋଇଛି, ସେ କଥାର ଉତ୍ତର ଦେବାପାଇଁ କାହାର ସାହସ ହେବ ନାହିଁ । ସମସ୍ତେ କହିପାରିବେ ନାହିଁ ? ସେହି ରାସ୍ତାର ଜନ୍ମବେଳେ ଆନନ୍ଦ

ଉତ୍ସବ ଲାଗିଥିଲା କି ଶ୍ମଶାନର ଚିତା ଜଳୁଥିଲା । କିଏ କହିବ, ସେତେବେଳର କଥା, ସେତେବେଳେ ଦୁଇଜଣ କବି ରାଧାନାଥ ଆସିଥିଲେ । ତାଙ୍କ କବିତାବାଣୀ କିନ୍ତୁ ଏ' ପାଦତଳର ରାସ୍ତା ବିଷୟରେ ଝଙ୍କାର ତୋଳି ନାହିଁ । ତାଙ୍କ କବିତା ଏ ବିଷୟରେ ବଡ଼ ନିଷ୍ଠୁର । କିନ୍ତୁ କହିଥିଲେ, ସେହି କେବଳ ପାରିଥାନ୍ତେ ।

ତେବେ କିଏ କହିବ ସେ କଥା ? ମୂକ ତରୁଶ୍ରେଣୀ, ତପୋମଗ୍ନ ପାହାଡ଼ କହିପାରନ୍ତି ସେ କଥା । ଯଦି ସେମାନେ କହିପାରନ୍ତେ ତେବେ କହନ୍ତେ ଅନେକ କଥା । ତାହା କେବଳ ଗଡ଼ଜାତ ରାସ୍ତାର ଇତିହାସ ନୁହେଁ, ଓଡ଼ିଶାର ଇତିହାସ ହୁଅନ୍ତା । ସେମାନେ ଏହିପରି କେତେ କଥା କହିପାରନ୍ତେ—

ଦିନେ ପ୍ରାସାଦ ଭିତର ଲୋକଙ୍କପାଇଁ ବାଟ କଟାଇବା ଲାଗି କୁଟୀର ଭିତରୁ କଙ୍କାଳସାର ଲୋକ ଦଳଦଳ ହୋଇ ଆସିଲେ । ରାଜଭକ୍ତିରେ ସେମାନଙ୍କର ବୁକୁ ଥରୁଥିଲା । କଟିଦେଶରେ କନା ଗୁଡ଼ାଇ, ମଧ୍ୟାହ୍ନ ସୂର୍ଯ୍ୟ ଆଡ଼କୁ ତାକୁ ଦେଖାଇ ସେମାନେ ପଥର ଉପରେ ହାତୁଡ଼ି ପିଟିବାରେ ଲାଗିଲେ । ସେମାନେ କୁରାଢ଼ି ଚଳାଇବାକୁ ଚେଷ୍ଟା କଲେ, ବନ୍ଧୁର ଭୂମିକୁ ସମାନ କରିବାକୁ ଝାଳ ଦେଇ ଓଦାକଲେ । ତାହା ଝାଳ ନୁହେଁ, ତାହା ରକ୍ତ । ତାହା ବୋହିଯାଇ ଭୂଇଁକୁ ରଙ୍ଗ କରିପକାଇଲା ।

ତା'ପରେ ହେଲା ସୁନ୍ଦର ରାସ୍ତା । ତା ଉପରେ ରାଜା ଗଲେ, ଦେବାନ ଗଲେ, ରାଜକର୍ମଚାରୀ ଗଲେ, ବାବୁଭାୟା ଗଲେ, ଧୋବଧାଉଳିଆ ଗଲେ, କବି ଆସିଲେ,—ଲେଖିଗଲେ—"ଏହି ତ ଦେବରାସ୍ତା ! ଏ ରାଜ୍ୟରେ ନରରୂପୀ ଦେବତାଙ୍କର ବାସ !"

କିନ୍ତୁ କବିର ସେହି କବିତାକୁ, ସେହି ରାସ୍ତା ଉପରେ, ବଣ ଗଡ଼ରେ ପାହାଡ଼ ପାଖେ, ଗିରିନଦୀକୂଳେ ଯାଇ ପଢ଼ ତ, କଣ ଉତ୍ତର ମିଳିବ ଶୁଣିବ । ତାଛାତିର ପଞ୍ଜରୁ ସେହି ଗୀତକୁ ପ୍ରତିଧ୍ୱନିରେ ଫେରାଇଦେଇ ସେ ବଣ, ପାହାଡ଼, ନଦୀ, ଝରଣା କହିବେ– କବି, ତୁଚ୍ଛ ସ୍ତାବକ, ତୁମର ବାଣୀ କି ପ୍ରାଣରେ ଏହି ଦରଜ ବୁଝିଲା ? ଯେ ରାସ୍ତା ଗଢ଼ିଲା ତା' ପେଟରେ ଅନ୍ନ ନାହିଁ । ତାର ଏଥିରେ ଯିବାର ଅଧିକାର ନାହିଁ । ଆଉ ତୁମେ ନାଁ ଦେଲ ଏ 'ଦେବରାସ୍ତା !' ଏଠି ଦେବତାଙ୍କର ବାସ ! କି ସ୍ୱାର୍ଥାନ୍ଧ ତୁମେ !

ହଁ, ସେଇ 'ଦେବରାସ୍ତା'ର ଗୋଟିଏ ସାକ୍ଷୀ କଥା କୁହାଯାଉଛି ।

ତାଙ୍କୁ ଉପରେ ଖବ ଛୁଡ଼ପଡ଼ୁଛି । 'ଦେବଗସ୍ତା'ର ବାଁ ବଗରେ ଶଗଡ଼ରାସ୍ତାରେ ଶଗଡ଼ର ଦଣ୍ଡା ଧରି ଧରି ରସା କହିଲା—

"ନା ଆଉ ପାରହେବ ନାହିଁ, ଏ ବାଟରେ କ ଆଉ ବଳଦ ଯିବେ ? ଏ ଯେ ଗୋଟା ଗୋଟା ଢିମା ପଥର୍, ଖାଲ ଢିପ । ଏଥିରେ କ ମୋର ବଳଦ ଆଉ ଚାଲିପାରିବେ ?"

ପଚଖଣ୍ଡା ଦେଇ ଢ' ଚାରିଟା ବଡ଼ ଶାଳ ଗଛ ସେହି ନକଟରେ ମୂକ ସାକରେ ଠିଆ ହୋଇଥିଲେ । ଗ୍ଛଇପାଇଁ ସେ ଆଡ଼କୁ ଥରେ ଚାହିଁଦେଇ ରସା ନଘଣରେ ଶଗଡ଼ ଆଗପାଖକୁ ଚାଲିଗଲା । ତା'ପରେ କାଳିଆ ବଳଦର ବେକଟାକୁ ଆଉଁସି ଆଉଁସି କହିଲା—

"ଆହା କେତେ ମାଇଲ, ପିଠିରେ ନୋଳା ଫାଟିଯାଇଛି, ଆଉ ମାରିବ ନାହିଁ । ପାଣି ଟିକଏ ହେଲେ ମିଳନ୍ତା !"

ରସାର କାତର ଦୃଷ୍ଟି ଥରେ କାଳିଆ ବଳଦ ଉପରେ, ଥରେ ଯାଇ ପାଖରେ ପଡ଼ିଥିବା "ଦେବଗସ୍ତା" ଉପରେ । ବଗୃରେ—"କେହି ତ ନାହାନ୍ତି ! ଏବେତେବେଳେ ଏହା ଉପରେ ଶଗଡ଼ଟା ଓଡ଼ାଇ ନେଲେ କଏ ଦେଖିବ ? ଆଉ ଦଶକୋଶ ବାଟ । ପନ୍ଦର କୋଶ ଆସିଲିଣି । ଆହା, ଏଇ ହାତରେ ଏଇ ସଡ଼କପାଇଁ ହାଡ଼ୁଡ଼ ପିଟି ପିଟି ରକ୍ତ ପାଣି କରିଦେଇଛି ।"

ରସା ପୁଣି ଭାବିଲା । ତା' ଛାତିରେ ଛନକା ପଶିଯାଏ । ଭାବେ—"ଯେବେ ଧରାପଡ଼ିବ କଏ ସାହାହେବ ? ନା, ନହେଲେ ତ ନଚଳେ । ମୋର କାଳିଆଟି ମଲାପରି ହୋଇଗଲାଣି; ତା ପାଟିରୁ ଜବ ବାହାରି ପଡ଼ିଲାଣି ।" ପୁଣି ଭାବେ— "ଯିବ, ଯିବ, ଗଲେ ଧରାପଡ଼ିଯିବ ପରା ।"

ସେଇଠାପରି ଠିଆ ହୋଇ ରସା କୌଣସି ସିଦ୍ଧାନ୍ତରେ ପହଞ୍ଚ ପାରିଲା ନାହିଁ । ଦୂରରେ କେଉଁ ଗହନବନରେ କେଉଁଠି ମିରିଗର କୁହାଟ ଶୁଭିଲା । ରସା ଚମକ ଦେଖିଲା, ସେ କେତେବେଳୁ କାଳିଆ ବଳଦଟାକୁ ଜାକ ଧରି ଖରାଟାରେ ଠିଆ ହୋଇଛି । ତା' ଆଖିରୁ ଲୁହ ଦୁଇ ଧାର ବୋହିପଡ଼ୁଛି ।

ବହୁତ ଭାବନାପରେ ରସାର ଶଗଡ଼ ଯାଇ ଦେବଗସ୍ତାରେ ଉଠିଲା । ସେତେବେଳକୁ ରସା ଦେହରେ ପ୍ରାଣ ନ ଥାଏ । ପତ୍ରଟିଏ କେଉଁଠି ଖଡ଼୍‌କନା ହେଲେ ସେ ଚମକ ଶଗଡ଼କୁ ସଡ଼କ ତଳକୁ ଗଡ଼େଇ ଦେବାକୁ ଚେଷ୍ଟା କରେ ।

କୁମ୍ଭାଟୁଆ କେଉଁଠି ନାଳ ବା ନଈକୂଳେ ଶବ୍ଦ କଲେ ମଟର ଶବ୍ଦ ହେଲା ବୋଲି ସେ ଚମକି ଜାଗାଏ । ମନେ ମନେ କହୁଥାଏ, "ଆଜ ଟିକିଏ, ଆଉ ପାଏ, ଆଉ କୋଶେ, ପ୍ରଭୁ ହେ !" ରସାର ସେତେବେଳେ ବାଘଭୟ ନ ଥାଏ, ଥାଏ ବାବୁ-ଭୟ । ତା' ମନରେ ଠିକ୍ ସେହିପରି ଅବସ୍ଥାବେଳେ ଏକ ବାଙ୍କମୁଣ୍ଡେ ଶୁଭିଲା—ଫେଁ—ଫେଁ—ଫେଁ—

ରସା ତଳକୁ ଉପରକୁ, ଆଗକୁ ପଛକୁ ଗୁହାଁ କେବଳ ପ୍ରଭୁ ହେ ବୋଲି ଡାକିଦେଲା । ପୁଣି ଶୁଭିଲା, ଫେଁ—ଫେଁ—ଫେଁ—

ସେ ଭାବିଲା ମଟର, ମଟର ତ ନୁହେଁ, ସେ ଅଇଲା ତାର କାଳ । କାଳିଆର ବେକଧରି ସେ ଶଗଡ଼ଟା ତଳକୁ ଗଡ଼ାଇ ଗଡ଼ାଇ ମଟରଟାଏ ମାଡ଼ିଆସିଲା । ମୁହୂର୍ତ୍ତକେ ସଡ଼କ ତଳେ ଶଗଡ଼, ବଳଦ ଓ ମଣିଷ ଯାଇ ପଡ଼ିଲେ ।

ଆସାମୀ ରସା, ତାର ଦୁଇ ପାଖେ ଦୁଇ ଜଣ କନେଷ୍ଟବଳ । ରସାର ଦୁଇ ଆଣ୍ଠୁ ଓ ଦୁଇ କହୁଣୀରେ କନା ଗୁଡ଼ାଯାଇଛି । 'ଦେବଗସ୍ତା'ରୁ ମଣିଷ-ଗସ୍ତାକୁ ଅଇଲାବେଳକୁ ସେ ଦିନ ରସା ଆଣ୍ଠୁ ଓ କହୁଣୀରେ ପରିଶ୍ରମ କରିବାକୁ ପଡ଼ିଥିଲା ।

ରାଜ-ବିଚାରାଳୟରେ ବିଚାର ହେଲା । ଦଣ୍ଡ ହେଲା । ରସା କଥା କିନ୍ତୁ କାହାକୁ ଶୁଝିଲା ନାହିଁ । ସେ ଏତିକି କେବଳ କହିଲା, "କାହିଁ ମୋର କାଳିଆ, ତିନି ପୁଡ଼ଗ ଧାନ ବିକି କିଣିଥିଲି, ତାର ଶିଙ୍ଘ ଭାଜିଗଲା, ତାକୁ କି ଆଉ ଦେଖିପାରିବି ! ସେ ତ ସେବାଟେ ଗୁଲିପାରିଲା ନାହିଁ । କେତେ ବାଡ଼ାଇଛନ୍ତି, କେତେ ପିଟିଛନ୍ତି !"

ରସାର ଏ କାହାଣୀ କିନ୍ତୁ ଅନେକ ଦିନ ତଳର କଥା ବୋଲି ଲୋକେ କହନ୍ତି । ରାଜବାଟୀ ଆଗର ସେ ଯେଉଁ ବରଗଛଟା ସେତେବେଳକୁ କେବଳ ମାତ୍ର ଉଚ୍ଚ ହୋଇଥିଲା; ଏବେ ତାହା ମହାଦ୍ରୁମ । କିନ୍ତୁ ଲୋକମୁଖରେ କଥା ଅଛି, ଏହି ଯେଉଁ ରାସ୍ତା ବଣ ଭିତର ଭେଦ କରି ଦୂର ପାହାଡ଼ ପାଖେ ଲାଗିଛି ରସା ଯାଇ ସେଠାରେ ଅଛି । ଜେଲଖାନା ଭିତରେ ଅଢ଼େଇ ବର୍ଷ ରଖି ରଜାଘର ଲୋକ ତାକୁ ଯେତେବେଳେ ଛାଡ଼ିଦେଲେ ସେତେବେଳକୁ ତାର ହାଡ଼ଗୁଡ଼ାକ କେବଳ ଥିଲା । ସେହି ହାଡ଼ କେତେ ଖଣ୍ଡକୁ ଦାବୀ କରିବାପାଇଁ ଏ ଗଡ଼ଜାତ ମୂଲକରେ ତା'ର କେହି ଆପଣାର ନ ଥିଲେ । ବଣର ବିଲୁଆ, କୁକୁର

କେତୋଟି କ୍ଷଣିକ ଆମୋଦରେ ତାକୁ ଦାଗୀ କରି ବସିଥିଲେ । କିନ୍ତୁ ସେଥିରେ କିଛି ରସ ନ ଥିଲା, କି ରକ୍ତ ନ ଥିଲା । କି ପାଣି ନ ଥିଲା ସେହି ରକ୍ତ, ମାଂସ, ହାଡ଼ —ପାଣିହୀନ ହାଡ଼ କେତେ ଖଣ୍ଡ ମାଟି ସଙ୍ଗେ ମିଶିଗଲା ସତ; ମାତ୍ର ରସା ରହିଲା ଏ ସଡ଼କ ତଳେ ତଳେ । ଏବେ ମଧ୍ୟ ଏହି 'ଦେବଗ୍ରସ୍ତା' ପାଖେ ପାଖେ ଶଗଡ଼ ଗଲାବେଳେ ନିର୍ଧୂମ ଖରାବେଳେ ରସା ଗଛପତ୍ର ଚହଲାଇ ସୁଜ ସୁଜ ପାଟି କରେ । ତାର ତୃଷା ନିବାରଣ ହୁଏ ନାହିଁ ! ବାଟୋଇ ଏ ବାଟେ ଗଲାବେଳେ କେବେ କେବେ ରସାର ସ୍ୱର ଶୁଣନ୍ତି, କେତେବେଳେ ଆଖି ଆଗରେ ତା'ର ଛବି ମଧ୍ୟ ଦେଖନ୍ତି ।

